# ହିନ୍ଦୀ-ସାହିତ୍ୟ ପରିଚୟ




ପ୍ରକାଶକ

ଓଡ଼ିଶା ସାହିତ୍ୟ ଏକାଡେମୀ

# ହିନ୍ଦୀ-ସାହିତ୍ୟ ପରିଚୟ

ଲେଖକ :

ଶ୍ରୀ ଦୀନବନ୍ଧୁ ରଥ

ପ୍ରକାଶକ :

ଓଡ଼ିଶା ସାହିତ୍ୟ ଏକାଡେମୀ
ନୂଆ ରାଜଧାନୀ—ଭୁବନେଶ୍ୱର

ମୂଲ୍ୟ—୭୫ ନୂଆ ପଇସା

# ଆଦ୍ୟକଥନ

ଆଜକାଲି ଯେ କୌଣସି ଆଞ୍ଚଳିକ ବା ପ୍ରାଦେଶିକ ସାହିତ୍ୟର ଆଲୋଚନା ବେଳେ ପଡ଼ୋଶୀ ସାହିତ୍ୟ ତଥା ସମସାମୟିକ ଅନ୍ୟାନ୍ୟ ସାହିତ୍ୟ ଉପରେ ବିଶେଷ ଦୃଷ୍ଟି ଦିଆଯାଇ ଥାଏ । ଆଧୁନିକ ଭାରତୀୟ ଭାଷାମାନଙ୍କର କ୍ରମବିକାଶ ଓ ସମୃଦ୍ଧିର ପରିମାଣ ଜାଣିବା ଲାଗି ଭାରତର ବିଭିନ୍ନ ଅଞ୍ଚଳର ସାହିତ୍ତ୍ୟିକମାନଙ୍କ ମଧ୍ୟରେ ନୂତନ ଆଗ୍ରହ ଓ ଅଭିନବ ପ୍ରେରଣା ପ୍ରକାଶ ପାଉଛି । ଗତ କିଛି ପାଞ୍ଚ ବର୍ଷ ମଧ୍ୟରେ ଭାରତରେ ଯେଉଁ କେତୋଟି ବଡ଼ ଧରଣର ସାହିତ୍ୟ ସମ୍ମେଳନ ଅନୁଷ୍ଠିତ ହୋଇଛି, ସେଗୁଡ଼ିକରେ ଲେଖକ-ମାନଙ୍କର ଏହି ଆଗ୍ରହ ବିଶେଷ ଭାବରେ ପ୍ରକାଶ ପାଇଛି । କେନ୍ଦ୍ର 'ସାହିତ୍ୟ ଏକାଡେମୀ' ପକ୍ଷରୁ ମୁଖ୍ୟ ମୁଖ୍ୟ ଭାରତୀୟ ଭାଷା-ମାନଙ୍କର ସଂକ୍ଷିପ୍ତ ଇତିହାସ ମଧ୍ୟ ପ୍ରକାଶ ପାଇଛି । ଓଡ଼ିଶାର ପାଠକ-ସାଧାରଣଙ୍କୁ ବିଭିନ୍ନ ଭାରତୀୟ ଭାଷା ତଥା ଇଂରାଜୀ ପ୍ରଭୃତି କେତୋଟି ବିଖ୍ୟାତ ଭାଷାର ସଂକ୍ଷିପ୍ତ ଇତିହାସ ଜଣାଇବା ଲାଗି 'ଓଡ଼ିଶା ସାହିତ୍ୟ ଏକାଡେମୀ' ପକ୍ଷରୁ ଯେଉଁ ଉଦ୍ୟମ ହେଉଛି, ଏହା ହେଉଛି ତାହାର ଆଦ୍ୟ ପ୍ରକାଶ । ହିନ୍ଦୀ ସାହିତ୍ୟକୁ ଗବେଷଣାତ୍ମକ ଭାବରେ ପରିଚିତ କରାଇବାର ଲକ୍ଷ୍ୟ ଏଥିରେ ନାହିଁ । 'ଜାମସେଦ-ପୁର' କୋଅପରେଟିଭ କଲେଜର ଅଧ୍ୟାପକ ଶ୍ରୀ ଦୀନବନ୍ଧୁ ରଥ ଏଥିରେ ସହଜ ଭାବରେ ହିନ୍ଦୀ ସାହିତ୍ୟର ସଂକ୍ଷିପ୍ତ ଇତିହାସ ଉପସ୍ଥାପନ କରିବାକୁ ଚେଷ୍ଟା କରିଛନ୍ତି ।

**ଗୌରୀକୁମାର ବ୍ରହ୍ମା**

# ହିନ୍ଦୀ-ସାହିତ୍ୟ ପରିଚୟ

(୧ମ)

## ପ୍ରାଚୀନ ହିନ୍ଦୀ ସାହିତ୍ୟର ପରମ୍ପରା

ଆଧୁନିକ ଭାରତୀୟ ଭାଷାଗୁଡ଼ିକ ମଧ୍ୟରେ ହିନ୍ଦୀ ଭାଷା ଅନ୍ୟତମ । ଏହାର ପ୍ରାରମ୍ଭ କେବେ—ଏକ ବିବଦମାନ ବିଷୟ । ହିନ୍ଦୀ ସାହିତ୍ୟର ଇତିହାସ ଲେଖକଗଣ ଅପଭ୍ରଂଶ ରଚନା କାଳରୁ ଏହାର ଉତ୍ପତ୍ତି ପ୍ରଦର୍ଶନ କରି ଯାଇଛନ୍ତି । ଜୈନ ଅପଭ୍ରଂଶ ଓ ଜୈନେତର ଅପଭ୍ରଂଶକୁ 'ପୁରୁଣାହିନ୍ଦୀ' ବୋଲି କୁହା ଯାଉଛି । ଏହାର ସତ୍ୟତା ଭାଷାବିଦ୍‌ମାନଙ୍କର ବିଗୁର୍ଯ୍ୟ ବିଷୟ । ବ୍ରଜ, ଅବଧୀ, ବୁନ୍ଦେଲି, ବଘେଲି, ରାଜସ୍ଥାନୀ, ଭୋଜପୁରୀ, ମଘୀ ଓ ମୈଥିଲୀ ଭାଷା ସବୁ ହିନ୍ଦୀର ଅନ୍ତର୍ଗତ । ସମଗ୍ର ଉତ୍ତରଭାରତରେ

ବହୁକାଳରୁ ହିନ୍ଦୀ ସାହିତ୍ୟର ଭାଷା ରୂପରେ ବ୍ୟବହୃତ ହୋଇ ଆସୁଅଛି *। ଉପରୋକ୍ତ ଉପଭାଷାଗୁଡ଼ିକ ନିର୍ବିବାଦରେ ହିନ୍ଦୀର ନିକଟବର୍ତ୍ତୀ ବୋଲି କୁହାଯାଇ ପାରେ। କାରଣ ଏମାନଙ୍କ ମଧ୍ୟରୁ ଅଧିକାଂଶ କଥିତ ଲୋକଭାଷା। ସେ ଯାହାହେଉ, ହିନ୍ଦୀର ସୁଧୀ ଇତିହାସକାରଗଣ ଯେପରି ଭାବରେ ତାହାର ମୂଳଧାରା ପ୍ରଦର୍ଶନ କରିଛନ୍ତି, ତାହାର ଅନୁସାରେ ହିନ୍ଦୀ-ସାହିତ୍ୟର ପରମ୍ପରା ବିଷୟ କରଣୀୟ ମନେହୁଏ।

ହିନ୍ଦୀ ଭାଷାର ଆଦିକାଳକୁ ଦଶମ ଶତାବ୍ଦୀର ଶେଷଦଶକ ଠାରୁ (ସନ ୯୮୩) ଗ୍ରହଣ କରାଯାଏ। ସିଦ୍ଧ ସାହିତ୍ୟ, ନାଥ ସାହିତ୍ୟ ଓ ଚାରଣ ସାହିତ୍ୟର ଧାରା ଏ କାଳରେ ପ୍ରଧାନତଃ ଲକ୍ଷ୍ୟଣୀୟ। ଲୁଇପା, ହାଡ଼ିପା, ଶବରୀପା ଆଦି ଚୌରାଶୀ ସିଦ୍ଧ ଙ୍କର ରଚନା ସିଦ୍ଧ-ସାହିତ୍ୟରେ ବର୍ଗୀଯ଼। ପଞ୍ଚଧ୍ୟାନୀ ବୁଦ୍ଧ, ବୋଧିସତ୍ତ୍ୱ, ମହାସୁଖବାଦ, ପଞ୍ଚମକାର ସାଧନର ବର୍ଣ୍ଣନା ଏଥିରୁ ମିଳିଥାଏ। ଗୋରଖନାଥ, ମତ୍ସ୍ୟେନ୍ଦ୍ରନାଥ, ନବୃତ୍ତିନାଥ ଇତ୍ୟାଦିଙ୍କର ଲେଖାକୁ ନାଥ-ସାହିତ୍ୟ କୁହାଯାଏ। ଶୂନ୍ୟ, ଅନହଦନାଦ, ନିରଞ୍ଜନର ଧାରଣା, ହଠ ଯୋଗର ବିଷୟ ଏମାନଙ୍କ କୃତିରେ ହୋଇଅଛି। ଏହି ଦୁଇଧାରାର ଲେଖାରେ ସାହିତ୍ୟର ଗୁଣ ଆଦୌ

---

*ସମସାମୟିକ ଯୁଗରେ ମୈଥିଳୀ-ସାହିତ୍ୟିକଗଣ ହିନ୍ଦୀଠାରୁ ମୈଥିଳୀ ଗୋଟିଏ ସ୍ୱତନ୍ତ୍ର ଭାଷା ବୋଲି ପ୍ରତିପାଦନ କରି ଆନ୍ଦୋଳନ ଆରମ୍ଭ କରିଛନ୍ତି। ଶାସନବିଧାନରେ ଆଧୁନିକ ଭାରତୀୟ ଭାଷା-ମାନଙ୍କ ମଧ୍ୟରେ ମୈଥିଳୀକୁ ସ୍ୱତନ୍ତ୍ର ସ୍ଥାନ ଦେବାପାଇଁ ସେମାନେ ଦାବୀ କରୁଅଛନ୍ତି। ମୈଥିଳୀ ଭାଷାରେ ପତ୍ରପତ୍ରିକା ପ୍ରକାଶନ ଆରମ୍ଭ ହେଉଥିବାର ଜଣାଯାଏ।

ନାହିଁ କହିଲେ ଚଳେ । ଏହି ଯୁଗରେ ଯେଉଁ ବୀରଗାଥା ମୂଳକ କୃତି ମିଳେ, ସେଗୁଡ଼ିକରେ ସାହିତ୍ୟର ମୁଦ୍ରାଙ୍କ ରହିଛି । ଉଗଲ ଅପଭ୍ରଂଶ-ଭାଷାରେ ରଚିତ ହମ୍ମୀରରାସୋ, ଏ ଧରଣର ଲେଖା । କ୍ରମେ ହିନ୍ଦୀ ଭାଷା ଅପଭ୍ରଂଶ ସ୍ତର ଅତିକ୍ରମ କରି 'ଦେଶଭାଷା' ବା 'କାବ୍ୟଭାଷା'ରେ ପରିଣତ ହୋଇଥିଲା । ରାଜକବି ନଲହିଙ୍କର 'ବୀସଲଦେବ ରାସୋ',କବି ଚନ୍ଦବରଦାଇଙ୍କର 'ପୃଥ୍ୱୀରାଜରାସୋ', 'ଖୁମାନ୍‌ରାସୋ' 'ଜୟଚନ୍ଦ୍ର ପ୍ରକାଶ', 'ରଣମଲ୍ଲ ଛନ୍ଦ' ଆଦି ଦେଶ-ଭାଷାରେ ରଚିତ ବୀର-କାବ୍ୟ । ଏହି ଶ୍ରେଣୀର ଲେଖାରେ ରାଜା ବୀରପୁରୁଷମାନଙ୍କର ମହିମାପୂତ କୀର୍ତ୍ତି । ପ୍ରେମ ଓ ଶୃଙ୍ଗାରି ଭାବର ପ୍ରାଧାନ୍ୟ ଏଗୁଡ଼ିକରେ ନିହିତ । ଏ କାଳର କ୍ଷୁଦ୍ର-ଗୀତି ରଚନା ମଧ୍ୟରେ କବି ଖୁସୁରଙ୍କର ପ୍ରହେଳିକା ଓ ମୈଥିଳୀ-କୋକିଳ "ବିଦ୍ୟାପତି"ଙ୍କର ରାଧାକୃଷ୍ଣ ଲୀଳା ମୂଳକ ଶୃଙ୍ଗାରି ରଚନା ପ୍ରଧାନ । ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଉପରୋକ୍ତ ଭାବରେ ହିନ୍ଦୀ ସାହିତ୍ୟର ଉନ୍ମେଷ ଲକ୍ଷ୍ୟ କରାଯାଇ ପାରେ ।

ହିନ୍ଦୀ ଭକ୍ତି-ସାହିତ୍ୟର ବିକାଶ ପୂର୍ବ ମଧ୍ୟକାଳ ଅର୍ଥାତ୍ ୧୪୦୦ ଖ୍ରୀଷ୍ଟାବ୍ଦରୁ ୧୬୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ହୋଇଅଛି । ଭକ୍ତି ଧର୍ମର ସ୍ରୋତ ଦକ୍ଷିଣ-ଭାରତରୁ ସୃଷ୍ଟି ହୋଇ ଉତ୍ତର-ଭାରତରେ ପ୍ରଚୁର ଓ ପ୍ରସାର ଲାଭ କରିଥିବାର ଜଣାଯାଏ । ଖ୍ରୀ: ଅ: ୧୦୧୫ରେ ରାମାନୁଜାଚାର୍ଯ୍ୟ ଆବିର୍ଭୂତ ହୋଇ ଜାତିଧର୍ମନିର୍ବିଶେଷରେ ଭକ୍ତି ସାଧନର ମାର୍ଗ ପ୍ରଦର୍ଶନ କରିଥିଲେ । ପ୍ରାୟ ଦ୍ୱାଦଶ ଶତାବ୍ଦୀରେ ଅଦ୍ୱୈତ-ବାଦୀ ଶଙ୍କରଙ୍କର ମତ ବିରୁଦ୍ଧରେ ପ୍ରତିକ୍ରିୟା ଆରମ୍ଭ ହେଲା ଓ ନାନା ଧର୍ମ-ସମ୍ପ୍ରଦାୟ ମୁଣ୍ଡ ଟେକି ଉଠିଲା । ରାମାନୁଜଙ୍କର ଶ୍ରୀସମ୍ପ୍ରଦାୟ, ମାଧ୍ୱାଚାର୍ଯ୍ୟଙ୍କର ବିଷ୍ଣୁ ସମ୍ପ୍ରଦାୟ, ବିଷ୍ଣୁସ୍ୱାମୀଙ୍କର ରୁଦ୍ର-ସମ୍ପ୍ରଦାୟ ଓ ନିମ୍ବାର୍କଙ୍କର ସନକ-ସମ୍ପ୍ରଦାୟ ଏମାନଙ୍କମଧ୍ୟରେ

ମୁଖ୍ୟ । ୧୫ଶ ଶତାବ୍ଦୀରେ ରାମାନୁଜପନ୍ଥୀ ସ୍ୱାମୀ ରାମାନନ୍ଦ ରାମଙ୍କୁ ବିଷ୍ଣୁଙ୍କର ଅବତାର ରୂପରେ ପ୍ରତିଷ୍ଠା କଲେ ଏବଂ ଏହି କାଳରୁ ରାମଙ୍କର ଉପାସନା-ପଦ୍ଧତି ସୃଷ୍ଟି ହେଲା । ଅନ୍ୟ ପକ୍ଷରେ ସ୍ୱାମୀ ବଲ୍ଲଭାଚାର୍ଯ୍ୟ ପ୍ରେମସ୍ୱରୂପ ଶ୍ରୀକୃଷ୍ଣଙ୍କର ଉପାସନା ପ୍ରତିଷ୍ଠା କରିଥିଲେ । ୧୬ଶ ଶତାବ୍ଦୀରେ ମହାପ୍ରଭୁ ଶ୍ରୀଚୈତନ୍ୟ କୃଷ୍ଣଭକ୍ତି ଧାରାର ଅଗ୍ରଣୀ ହୋଇଥିଲେ । ଏହାହିଁ ହିନ୍ଦୀ ସଗୁଣ ଭକ୍ତି ଧାରାର ସଂକ୍ଷିପ୍ତ କାହାଣୀ । ସଗୁଣ ଧାରାରେ କ୍ରମେ ଦୁଇଟି ଶାଖା ସୃଷ୍ଟି ଦେଖାଗଲା । ରାମାଶ୍ରୟୀ ଶାଖାର ସନ୍ଥକବି ତୁଳସୀଦାସ ପ୍ରଧାନ-ସାଧକ ଓ କବି । 'ରାମଚରିତ ମାନସ' ତାଙ୍କର ଅନବଦ୍ୟ କୃତି । ସ୍ୱାମୀ ଅଗ୍ରଦାସ, ନାଭାଦାସ, ପ୍ରାଣଚନ୍ଦ୍ର ଚୌହାନ ଓ ହୃଦୟରାମ ରାମଭକ୍ତି-ମୂଳକ କାବ୍ୟ-କବିତା ଲେଖିଥିଲେ । ଭକ୍ତକବି ସୁରଦାସ କୃଷ୍ଣାଶ୍ରୟୀ ଶାଖାର ପ୍ରଧାନ ଆଚାର୍ଯ୍ୟ । ତାଙ୍କ 'ସୁରସାଗର' 'ସୁରରସାବଳୀ'ରେ ଧାର୍ମିକତା, କବିତ୍ୱର ସୁଶୋଭନ ଛଟା ଛନ୍ଦେ ଛନ୍ଦେ ବିଳସିତ । କୁମ୍ଭନ-ଦାସ, କୃଷ୍ଣ ଦାସ, ପରମାନନ୍ଦ ଦାସ, ଚତୁର୍ଭୁଜ ଦାସ, ଗୋବିନ୍ଦ ସ୍ୱାମୀ, ଗଦାଧର ଭଟ୍ଟ ଆଦି କୃଷ୍ଣ-ଭକ୍ତ କବିଗଣ ସୁରଦାସଙ୍କ ପରେ ନାନା ରଚନା କରି ଯାଇଛନ୍ତି । ଭକ୍ତ ପ୍ରବରା ମୀରାବାଈଙ୍କର କୃତିରେ କୃଷ୍ଣ ପ୍ରେମର ଉଚ୍ଛଳ ଧାରା ପାଠକ ଓ ଶ୍ରୋତାର ପ୍ରାଣକୁ ରସାପ୍ଳୁତ କରିଦିଏ । ତୁଳସୀ ଦାସ, ସୁର ଦାସ, କବୀର ଓ ମୀରାବାଈଙ୍କର ଭଜନ ହିନ୍ଦୀଭାଷୀ ଜନତାକୁ ଏବେ ବି ଉଦ୍‌ବୋଧିତ କରୁଅଛି ।

ସଗୁଣ ଧାରାର ସମାନ୍ତରାଳ ଭାବରେ ନିର୍ଗୁଣ ଭକ୍ତିଧାରା ବିକଶିତ ହୋଇ ଉଠିଥିବାର ଜଣାଯାଏ । ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମର ଲୋକଙ୍କ ପାଇଁ ଏକ ସାଧାରଣ ପନ୍ଥାର ନିର୍ଦ୍ଦେଶ ମହାରାଷ୍ଟ୍ରର ପ୍ରସିଦ୍ଧ ଭକ୍ତ-କବି ନାମଦେବ ପ୍ରଦାନ କରିଥିଲେ ।

ସନ୍ଥ କବୀର ଦାସ ଏହାର ପରମାର୍ଜନ କରି ନିର୍ଗୁଣ ସାଧନାର ପନ୍ଥା ପ୍ରତିଷ୍ଠା କରିଥିଲେ । ଏହାପରେ ଜ୍ଞାନାଶ୍ରୟୀ ଓ ପ୍ରେମମାର୍ଗୀ ଧାରାରେ ଦ୍ୱିଧା ହେଲା । ଜ୍ଞାନାଶ୍ରୟୀ ଧାରାରେ ବ୍ରହ୍ମୋପଲବ୍ଧି ଓ ବ୍ରହ୍ମପ୍ରାପ୍ତି ପ୍ରଧାନ ବିଷୟ । କେତେବେଳେ ଏଥିରେ ବ୍ରହ୍ମବାଦର ପ୍ରାବଲ୍ୟ, ପୁଣି ବା କେତେବେଳେ ପୈଗମ୍ବରୀ ଖୋଦାବାଦର ପ୍ରାବଲ୍ୟ ନିକ୍ଷିତ ହୋଇଛି । ସୁଫୀ ସଂପ୍ରଦାୟର ଇସଲାମ କବିଗଣ ପ୍ରେମମାର୍ଗୀ ଧାରାର ପ୍ରତିଷ୍ଠାତା । ଏଠାରେ ଆରାଧ୍ୟ କାମ୍ୟ ଭଗବାନ ବା ବ୍ରହ୍ମ 'ନାରୀ' ଏବଂ ଭକ୍ତ ବା ସାଧକ 'ନର' ବା ନାୟକ । ସାଧନାର ମାର୍ଗରେ ଯେଉଁ କଷ୍ଟ ବା ପ୍ରତିବନ୍ଧକ ଆସେ—ତାହା ମଣିଷର ସଂସାରିକ ମୋହଗତ ସ୍ୱାଭାବିକ ଦୁର୍ବଳତା । କବି ଜାୟସୀଙ୍କର 'ପଦ୍ମାବତ' କାବ୍ୟରେ ଏହି ଧାରାର ପରିଚୟ ମିଳେ । ଏଠାରେ ନାୟକ ରାଜକୁମାର ବ୍ରହ୍ମାକାଂକ୍ଷୀ ମାନବ ମାତ୍ର । ନାୟିକା ରାଜକୁମାରୀ ସ୍ୱୟଂ ବ୍ରହ୍ମ ଓ ଶୁକପକ୍ଷୀଟି ଗୁରୁ । କବି କୁତବନଙ୍କର "ମୃଗାବତୀ", ମଂଝନଙ୍କର "ମଧୁମାଳତୀ", ଉସମାନ୍‌ଙ୍କର 'ଚିତ୍ରାବଳୀ' ଏହି ଭାବଧାରାର ପ୍ରତୀକ-କୃତି । ଭକ୍ତି-ଧର୍ମଦୃଷ୍ଟିରୁ ସୁଫି-କବି ମାନଙ୍କର ଚିନ୍ତାଧାରା ଯାହା ହେଉ ନା କାହିଁକି—କାବ୍ୟ ଦୃଷ୍ଟିରୁ ସେମାନଙ୍କର ରଚନାର ମହତ୍ତ୍ୱମୟତା ଅବଶ୍ୟ ସ୍ୱୀକାର୍ଯ୍ୟ ।

ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧଠାରୁ ଊନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧର ଶେଷକାଳ ପର୍ଯ୍ୟନ୍ତ ହିନ୍ଦୀ ସାହିତ୍ୟରେ ରୀତି ବା ଶୃଙ୍ଗାର ଯୁଗର ବିସ୍ତାର ପରି ଦୃଶ୍ୟମାନ ହୁଏ । ରୀତି ଯୁଗର କୃତିମାନଙ୍କ ମଧ୍ୟରେ କେତେକ ଶାସ୍ତ୍ରୀୟ ଅଳଙ୍କାରଗ୍ରନ୍ଥ ଓ ପୁଣି କେତେକ ସ୍ୱତନ୍ତ୍ର କାବ୍ୟ । କବି ନନ୍ଦ ଦାସଙ୍କର 'ରସମଂଜରୀ', କୃପାରାମଙ୍କର 'ହିତତରଙ୍ଗିଣୀ', କେଶବ ଦାସଙ୍କର 'କବିପ୍ରିୟା' ଓ 'ରସିକପ୍ରିୟା', କୁଳପତିଙ୍କର 'ରସରହସ୍ୟ', ଚିନ୍ତାମଣିଙ୍କର 'ଶୃଙ୍ଗାର ମଞ୍ଜରୀ',

ଦେବ କବିଙ୍କର 'ସୁଖସାଗର ତରଙ୍ଗ' ଆଦି ଲେଖା ରୀତିମୂଳକ ଅଳଙ୍କାର ଗ୍ରନ୍ଥ । ଏଥିରେ କେଉଁଠି ନାୟିକାଭେଦ, ପୁଣି କେଉଁଠି ରସ ଓ ଶୃଙ୍ଗାରର ଶାସ୍ତ୍ରୀୟ ବିଚାର କରାଯାଇଛି । ସଂସ୍କୃତ, ପାରସୀ ଗ୍ରନ୍ଥ ଏମାନଙ୍କର ଆଦର୍ଶ । ଷଡ଼ଋତୁ ବର୍ଣ୍ଣନ, ନାୟିକାର ଆନଖଶିଖ ସୌନ୍ଦର୍ଯ୍ୟ ବର୍ଣ୍ଣନ, ରାଧାକୃଷ୍ଣଙ୍କର ଅଷ୍ଟପ୍ରହର ବ୍ୟାପୀ ଲୀଳା କ୍ରମଶଃ ସାହିତ୍ୟରେ ରୂପ ପାଇଲା । ରାଧା ଓ କୃଷ୍ଣ ଆଉ ଦେବୀ ଦେବ ରୂପରେ ନ ରହି ସାଧାରଣ ପ୍ରେମିକା-ପ୍ରେମିକ ଭାବରେ ଦେଖା ଦେବାକୁ ଲାଗିଲେ । ଲୌକିକ-ପ୍ରେମର ଧାରା ସାହିତ୍ୟରେ ନବୀନତା ସୃଷ୍ଟି କଲା । ରୀତି ଯୁଗର ସ୍ୱତନ୍ତ୍ର କାବ୍ୟ ସୃଷ୍ଟିରେ ଯେଉଁମାନେ ଭାଗ ନେଇଥିଲେ ତନ୍ମଧ୍ୟରେ ଅବଦୁଲ ରହିମ ଖାନଖାନା, ସୟଦ ମୁବାରକ ଅଲି, ମୁବାରକ, ସେନାପତି, ବିହାରୀ, ମତିରାମ, ଦେବ, ବୃନ୍ଦ, ଆଲମ, ଘନାନନ୍ଦ, ରସନିଧି, ଠାକୁର ବୁନ୍ଦେଲ ଖଣ୍ଡୀ, ବୋଧା, ବେନି, ଚନ୍ଦ୍ରାମଣି, ତୋଷନିଧି, ପଦ୍ମାକର, ଭୂଷଣ, କାଳିଦାସ ତ୍ରିବେଣୀ, ସୁରତି ମିଶ୍ର, ସୁଖଦେବ ମିଶ୍ର, ଗଂଜନ, ପ୍ରୀତମ , ଭିଖାରୀ, ଭୂପତି, କବୀନ୍ଦ୍ର ଉଦୟନାଥ ପ୍ରଧାନ । ଏମାନଙ୍କ ମଧ୍ୟରୁ କେହି କେହି ରୀତିମୁକ୍ତ ପ୍ରେମାଖ୍ୟାନମୂଳକ କାବ୍ୟ ଲେଖିଯାଇଛନ୍ତି । କେହି କେହି ମଧ୍ୟ ଐତିହାସିକ କଥାବସ୍ତୁ ନେଇ ପ୍ରେମାଖ୍ୟାନ କାବ୍ୟ ସୃଷ୍ଟି କରିଛନ୍ତି । ସେ ଯାହା ହେଉ ହିନ୍ଦୀ ସାହିତ୍ୟ ଏ ଯୁଗରେ ବେଶ୍ ପ୍ରୌଢ଼ତା ଲାଭ କରି ପାରିଥିଲା ।

୧୮୫୦ ଖ୍ରୀଷ୍ଟାବ୍ଦରୁ ଆଧୁନିକ ଯୁଗର ଆରମ୍ଭ ହେଲା । ୧୮୦୩ରେ ଦିଲ୍ଲୀ ଇଂରେଜମାନଙ୍କର କରଗତ ହେଲା । ୧୮୩୫ ପରେ ଇଂରାଜୀ ଶିକ୍ଷା ଏ ଦେଶରେ ପ୍ରସାର ଲାଭ କରେ । ଇଂରେଜ ଶାସନର ପ୍ରତିଷ୍ଠା ଓ ପାଶ୍ଚାତ୍ୟ-ସାହିତ୍ୟର ପ୍ରଭାବରେ ଆଧୁନିକ ଯୁଗର ସୂତ୍ରପାତ ହେଲା । ସେ ଯାହା ହେଉ, ଆଧୁନିକ କାଳର

ସାହିତ୍ୟର ପୃଷ୍ଠଭୂମିରୂପେ ପ୍ରାଚୀନ ସାହିତ୍ୟର ସୁଦୀର୍ଘ ପରମ୍ପରା ରହିଛି । ଏହି ପରମ୍ପରାରେ ରାମଭକ୍ତି ଓ କୃଷ୍ଣଭକ୍ତି ମୂଳକ ସାହିତ୍ୟ, ବୀରଗାଥା ମୂଳକ ଭାବଧାରା, ରୀତି ଓ ଶୃଙ୍ଗାରାତ୍ମକ ସାହିତ୍ୟ ଉଜ୍ଜୀବିତ ରହିଛି । ତୁଳସୀ ଦାସ, ସୁର ଦାସ, ବିଦ୍ୟାପତି, କବୀର, ଜାୟସୀ, ଭୂଷଣ, ବିହାରୀ ଆଦି ମହୀୟାନ ପୁରୁଷଙ୍କର ପରମ୍ପରା ଆଧୁନିକ ହିନ୍ଦୀ ସାହିତ୍ୟର ପ୍ରେରକ ଶକ୍ତି ।



(୨ୢ)

# ଆଧୁନିକ କାଳର ଉତ୍ପତ୍ତି ଓ ଗଦ୍ୟର ସୃଷ୍ଟି

ଇଂରେଜୀ ଶାସନର ପ୍ରତିଷ୍ଠା ହୋଇଯିବା ପରେ ଭାରତର ସାମାଜିକ, ରାଜନୈତିକ, ଶିକ୍ଷା, ଧର୍ମ ପ୍ରତ୍ୟେକ ଦିଗରେ ଏକ ନବୀନ ଜାଗରଣ ଦେଖା ଦେଇଥିଲା । ଦୀର୍ଘକାଳ ଯୁଦ୍ଧ, ଅଶାନ୍ତି, ଅରାଜକତା ମଧ୍ୟରେ ବାସକରି ଭାରତର ସକଳ ପ୍ରାନ୍ତର ନରନାରୀ ନିଷ୍ପେଷିତ ହେଉଥିଲେ । ଇଂରେଜଙ୍କର ଶାସନ ସାରା ଭାରତକୁ ଗୋଟିଏ ରାଜନୈତିକ ଏକତା ସୂତ୍ରରେ ଗ୍ରଥିତ କରିପାରି ଥିଲା । କଲିକତା, ବମ୍ବେ, ମାନ୍ଦ୍ରାଜ ଆଦିରେ ଶିଳ୍ପ ପ୍ରତିଷ୍ଠାନ, ଶିକ୍ଷାନୁଷ୍ଠାନ ଗଢ଼ି ଉଠିଲା । ଦେଶରେ ରେଳ, ଡାକ ତାର ଆଦିର ବ୍ୟବସ୍ଥା ହେଲା । ଇଂରେଜୀ ଶିକ୍ଷାର ପଠନପାଠନ ଅଗ୍ରସର ହେଲା । ପାଶ୍ଚାତ୍ୟ ସାହିତ୍ୟ, ଦର୍ଶନ, ବିଜ୍ଞାନର ଭାବଧାରା ଭାରତୀୟ ପ୍ରାଣରେ ନବୀନ ସ୍ଫୂର୍ତ୍ତି ଆନୟନ କଲା । ଏଣେ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇଗଲା । ଗ୍ରନ୍ଥାଦିର ପ୍ରସାର ହେଲା । ନୂତନ ସଭ୍ୟତାର ଆଲୋକରେ ନରନାରୀଙ୍କର ପ୍ରାଣ ଉଦ୍ଭାସିତ ହୋଇଉଠିଲା । ଜାତୀୟତା ଓ ସଂସ୍କାର ଭାବଭାବନା ଜାଗ୍ରତ ହେଲା । ୧୮୮୫ରେ ନିଖିଳ ଭାରତ ଜାତୀୟ ମହାସଭାର ପ୍ରତିଷ୍ଠା, ବଙ୍ଗଭଙ୍ଗ ଆନ୍ଦୋଳନ, ସ୍ୱଦେଶୀ ପ୍ରଚାର ମଧ୍ୟବର୍ଗୀୟ ଶିକ୍ଷିତ ଜନସାଧାରଣଙ୍କର ନେତୃତ୍ୱରେ ଆରବ୍ଧ ହୋଇ ନୂତନ ଚେତନାର ଆବାହନୀ ଦେଲା । ମୂଳତଃ ସମାଜ, ଧର୍ମ, ସଂସ୍କୃତି ପ୍ରତ୍ୟେକ କ୍ଷେତ୍ରରେ ନବୀନ ଦୃଷ୍ଟିକୋଣ, ନବୀନ ସିଦ୍ଧାନ୍ତ ଉପସ୍ଥାପିତ ହୋଇଗଲା । ଭାରତର ପ୍ରତ୍ୟେକ

ପ୍ରାନ୍ତରେ ନିଜର ମାତୃଭାଷାର କଲ୍ୟାଣ ନିମିତ୍ତ ମନୀଷୀବୃନ୍ଦ ଲେଖନୀ ଧାରଣ କଲେ । ଦେଶରୁ ସାମନ୍ତବାଦୀ ବ୍ୟବସ୍ଥା କ୍ରମଶଃ ଲୋପ ପାଇ ଆସୁଥିଲା । ପଦ୍ୟର ସ୍ଥାନରେ ଗଦ୍ୟର ବିକାଶ ଅବଶ୍ୟମ୍ଭାବୀ ହୋଇ ଉଠିଲା ।

ଏହି ଜାଗରଣ କାଳରେ ଆଧୁନିକ ହିନ୍ଦୀ ସାହିତ୍ୟର ଅଭ୍ୟୁଦୟ ଘଟିଲା । ହିନ୍ଦୀ ପତ୍ରପତ୍ରିକା ପ୍ରକାଶନ ସମ୍ଭବ ହେଲା । ଆଧୁନିକ ସାହିତ୍ୟର ବିକାଶ ନିମିତ୍ତ ଏହା ହିଁ ପ୍ରଧାନ ସହାୟକ ହେଲା । ସବୁ ପ୍ରଥମେ ୧୮୧୫ରେ ରାଜା ରାମମୋହନ ରାୟଙ୍କର ବେଦାନ୍ତ ସୂତ୍ରର ହିନ୍ଦୀ ଅନୁବାଦ ଓ ପରେ ବଙ୍ଗଦୂତର ହିନ୍ଦୀ ଅନୁବାଦ ୧୮୨୯ରେ ପ୍ରକାଶ ପାଇଥିଲା । ପଣ୍ଡିତ ଯୁଗଳପ୍ରସାଦ ଶୁକ୍ଳ ସ୍ୱତନ୍ତ୍ର ହିନ୍ଦୀ ସମ୍ବାଦ ପତ୍ରିକା ଏହାର କେତେକ ବର୍ଷ ଆଗରୁ (୧୮୨୬) ପ୍ରକାଶ କରିଥିଲେ । ୧୮୩୪ ଖ୍ରୀଷ୍ଟାବ୍ଦରେ ପ୍ରଜାମିତ୍ର ଓ ୧୮୪୪ ଖ୍ରୀଷ୍ଟାବ୍ଦରେ ରାଜା ଶିବପ୍ରସାଦଙ୍କ ଦ୍ୱାରା ବନାରସ ସମାଚାର ପ୍ରକାଶିତ ହେଲା । କ୍ରମଶଃ ନାନା ପାଠ୍ୟପୁସ୍ତକର ରଚନା ଦେଖା ଦେଲା । ମାସିକ-ସାପ୍ତାହିକ ପତ୍ରିକା ମାଧ୍ୟମରେ, ପାଠ୍ୟ ପୁସ୍ତକର ମାଧ୍ୟମରେ ହିନ୍ଦୀ ସାହିତ୍ୟର ବିକାଶ ଉତ୍ତରୋତ୍ତର ଉନ୍ନତି ଦିଗରେ ଧାବମାନ ହେଲା ।

ଆଧୁନିକ ସାହିତ୍ୟର ବିକାଶରେ ଖ୍ରୀଷ୍ଟିଆନ ମିଶନାରୀମାନଙ୍କର ଉଦ୍ୟମ ପ୍ରଶଂସନୀୟ । ସେମାନେ ବାଇବେଲର ହିନ୍ଦୀ ଅନୁବାଦ ପ୍ରକାଶ କରିଥିଲେ । 'ଧର୍ମ ପୁସ୍ତକ କା ଇତିହାସ', 'ପ୍ରଭୁ ଈଶା କ୍ରୃଷ୍ଟ କେ ସମାଚାର', 'ଧର୍ମ ପୁସ୍ତକ' 'ଈଶୁକ୍ରୃଷ୍ଟକୀ ମଙ୍ଗଲ କଥା', 'ଧର୍ମାଧର୍ମ ପରୀକ୍ଷା', 'ଆର୍ଯ୍ୟତତ୍ତ୍ୱ ପ୍ରକାଶ' 'ଗୁରୁପରୀକ୍ଷା', 'କେଶବରାମକୀ କଥା' 'ମୂର୍ତ୍ତିପୂଜା କା ବୃତ୍ତାନ୍ତ' 'ହିନ୍ଦୂ ଧର୍ମ କା ବର୍ଣ୍ଣନ', 'ଗଙ୍ଗା କା ବୃତ୍ତାନ୍ତ' ଆଦି ଗ୍ରନ୍ଥ ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କର

ପ୍ରଚେଷ୍ଟାରେ ପ୍ରକାଶ ପାଇଥିଲା । ସାହିତ୍ୟର ସୃଷ୍ଟିରେ ଏହା କମ ପ୍ରେରଣା ଦେଇ ନାହିଁ ।

ଆଧୁନିକ ଯୁଗ ଗଦ୍ୟର ଯୁଗ । ଇଂରାଜୀ ଗଦ୍ୟ ସାହିତ୍ୟର ପ୍ରଭାବରେ ଭାରତୀୟ ଭାଷାମାନଙ୍କରେ ଗଦ୍ୟର ସୃଷ୍ଟି ହୋଇଅଛି । ପ୍ରାଚୀନ କାଳରେ ଯେଉଁ ଗଦ୍ୟ ଲେଖା ଯାଉଥିଲା, ତାହାର ସାହିତ୍ୟିକ ମୂଲ୍ୟ ପ୍ରାପ୍ତ ନଥିଲା କହିଲେ ଚଳେ । ଶୃଙ୍ଗାରରସ ମଣ୍ଡନ, ବିହାରୀ ସତସଇ, କବି ପ୍ରିୟା ଓ ହିତ ହରିବଂଶର ଟୀକା, ସେବକ-ଚନ୍ଦ୍ରିକା, ହିତରୂପ, ସେବାନିଧି ଆଦି ଗ୍ରନ୍ଥରେ ଥିବା ଗଦ୍ୟ ପାଠ କଲେ ଏହି ଉକ୍ତିର ସତ୍ୟତା ଉପଲବ୍‌ଧି ହୁଏ । ପ୍ରାଚୀନ ଗଦ୍ୟଲେଖା ମଧ୍ୟରେ କେତେକ ବ୍ରଜଭାଷା, ପୁଣି କେତେକ ରାଜସ୍ଥାନୀ ଭାଷାରେ ରଚିତ । 'ବର୍ଣ୍ଣରତ୍ନାକର' ମୈଥିଳୀ ଗଦ୍ୟଗ୍ରନ୍ଥ । କିନ୍ତୁ ଆଧୁନିକ ଯୁଗ ଖଡ଼ୀବୋଲି ଗଦ୍ୟର କାଳ । ଏହି ଭାଷା ପ୍ରଥମେ ଦିଲ୍ଲୀର ନିକଟବର୍ତ୍ତୀ ସ୍ଥାନରେ ପ୍ରଚଳିତ ଥିଲା । କ୍ରମେ ଏହି ଭାଷା ଭାଷୀମାନେ ବିକ୍ଷିପ୍ତ ହୋଇଗଲେ ଏବଂ ସେମାନଙ୍କର ପ୍ରଭାବରେ ଖଡ଼ୀବୋଲି ଭାଷା ଉତ୍ତର ଭାରତରେ ପ୍ରାଧାନ୍ୟ ବିସ୍ତାର କରିଥିଲା । ପ୍ରାଚୀନ ଖଡ଼ୀବୋଲିରେ ଗଦ୍ୟଲେଖା ମୋଗଲ ସମ୍ରାଟ ଆକବରଙ୍କ କାଳରୁ ହୋଇଥିବାର ଜଣାଯାଏ । 'ଚନ୍ଦ-ଛନ୍ଦ-ବରନନ କୀ ମହିମା' ଗ୍ରନ୍ଥ ଖଡ଼ୀବୋଲି ଭାଷାର ପ୍ରଥମ ଗଦ୍ୟ ଗ୍ରନ୍ଥ ଏହି ଖଡ଼ୀବୋଲି କ୍ରମଶଃ ମୁସଲମାନ ସୈନ୍ୟଙ୍କର ସାହାଯ୍ୟରେ ପରସିଆନ ସାହିତ୍ୟର ସଂସ୍ପର୍ଶ ଲାଭ କଲା । ପରେ ଏହା ଉର୍ଦ୍ଦୁ ଭାଷା ରୂପରେ ଉତ୍ତର-ଭାରତରେ ଦେଖାଦେଲା । ପୁଣି ସେହି ଖଡ଼ୀବୋଲି ସଂସ୍କୃତ ପ୍ରଭାବରେ ଉର୍ଦ୍ଦୁର ଠିକ୍ ସମାନ୍ତରାଳ ଭାବରେ ବିକଶିତ ହୋଇ ଆଜିର ରାଷ୍ଟ୍ରଭାଷା ହିନ୍ଦୀ ରୂପରେ ଦେଖା ଦେଇଅଛି । ଆଧୁନିକ ହିନ୍ଦୀ କହିଲେ—ଖଡ଼ୀବୋଲି ଗଦ୍ୟ ଓ ପଦ୍ୟକୁ ବୁଝିବାକୁ ହୁଏ ।

ଏହି ଭାଷାର ବିକଶିତ ପରିମାର୍ଜିତ ସଂସ୍କୃତ ପ୍ରଭାବିତ ଭାଷା ହିଁ ଆଜି ହିନ୍ଦୀ ସାହିତ୍ୟର ମାଧ୍ୟମ । ଊନବିଂଶ ଶତାବ୍ଦୀର ପୂର୍ବରୁ ମୈଥିଳୀ, ବ୍ରଜ, ରାଜସ୍ଥାନୀ ଆଦି ଗଦ୍ୟ ମାନଙ୍କରେ ଖଡ଼ିବୋଲିର ପ୍ରଚଳନ ହୋଇ ଆସୁଥିବାର ଜଣାଯାଏ ।

ହିନ୍ଦୀଗଦ୍ୟର ଉନ୍ନତି ଫୋର୍ଟ ଉଇଲିୟମ କଲେଜର ପ୍ରତିଷ୍ଠା ଦିନରୁ ସମ୍ଭବ ହୋଇଛି । ସଦଲ ମିଶ୍ର, ମୁନସୀ ଲଲ୍ଲୁଲାଲ, ମୁନସୀ ସଦାସୁଖଲାଲ ଓ ଇଁଶାଅଲ୍ଲା ଖାଁଙ୍କର ଉଦ୍ୟମ ଏ ଦିଗରେ ପ୍ରଶଂସନୀୟ । ସଦଲ ମିଶ୍ରଙ୍କର "ନାସିକେତୋପାଖ୍ୟାନ", ସଦାସୁଖଲାଲଙ୍କର "ସୁଖସାଗର", ଲଲ୍ଲୁଲାଲଙ୍କର "ପ୍ରେମସାଗର" ଓ ଇଁଶାଅଲ୍ଲାଖାଁଙ୍କର 'ରାଣୀ କେତକୀ କୀ କହାନୀ' ପ୍ରଧାନ ଗଦ୍ୟଗ୍ରନ୍ଥ ଅଟେ । ରାଜା ଶିବ ପ୍ରସାଦ, ରାଜା ଲକ୍ଷ୍ମଣ ସିଂହଙ୍କର ଉଦ୍ୟମ ଏ ଦିଗରେ ମଧ୍ୟ ପ୍ରଶଂସାର କଥା । ଏମାନଙ୍କ ବ୍ୟତୀତ ପଣ୍ଡିତ ବଂଶୀଧର, ବିହାରୀଲାଲ, ପଣ୍ଡିତ ବଦରୀଲାଲ, ରାମପ୍ରସାଦ ତ୍ରିପାଠୀ, ମଥୁରାପ୍ରସାଦ ମିଶ୍ର, ବ୍ରଜବାସୀ ଦାସ, ଶିବଶଙ୍କର, କାଶୀନାଥ ଖତ୍ରୀ, ବାବୁ ନବୀନଚନ୍ଦ୍ର ଓ ଶ୍ରଦ୍ଧାରାମ ଫୁଲଚ୍ୟାରୀ ହିନ୍ଦୀ ଗଦ୍ୟକୁ ପ୍ରାଣବାନ୍ କରିଯାଇଥିବାର ଜଣାଯାଏ ।

ହିନ୍ଦୀ ଭାଷା ଓ ସାହିତ୍ୟର ପୁନରୁତ୍ଥାନ କାଳରେ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର ଆବିର୍ଭାବ ପ୍ରାୟ ୧୮୫୦ ମସିହାରେ ହୋଇଥିଲା । ହିନ୍ଦୀ ଆଧୁନିକ ସାହିତ୍ୟର ଜନ୍ମଦାତାରୂପେ ଭାରତେନ୍ଦୁ ସମ୍ମାନ ଲାଭ କରିଛନ୍ତି । ସେ ଏକାଧାରରେ କବି, ନାଟ୍ୟକାର, ସାମ୍ବାଦିକ ଓ ଗଦ୍ୟ ସ୍ରଷ୍ଟା ଥିଲେ । ଆଜି ହିନ୍ଦୀ ସାହିତ୍ୟ କ୍ଷେତ୍ରରେ ଯେତେଗୁଡ଼ିଏ ଧାରା ଓ ଶୈଳୀ ବ୍ୟବହୃତ ତାର ମୂଳରେ ଭାରତେନ୍ଦୁଙ୍କର ପ୍ରେରଣା, ନିହିତ କହିଲେ ଅସମୀଚୀନ ହେବନାହିଁ । ତାଙ୍କର କାଳରୁ ହିନ୍ଦୀରେ ନାଟକ, ଉପନ୍ୟାସ, ଗଳ୍ପ, କବିତା, ନିବନ୍ଧ, ସମାଲୋଚନା

ଆଦି ସାହିତ୍ୟର ବିଭିନ୍ନ ଦିଗର ସୃଷ୍ଟି ହୋଇ ଆସିଅଛି । ଶ୍ରୀନିବାସ ଦାସ, ବାଲକୃଷ୍ଣ ଭଟ୍ଟ, ପ୍ରତାପନାରାୟଣ ମିଶ୍ର, ରାଧାକୃଷ୍ଣ ଦାସ, କାର୍ତ୍ତିକପ୍ରସାଦ ଖତ୍ରୀ, ଜଗମୋହନ ସିଂହ, କିଶୋରୀଲାଲ ଗୋସ୍ୱାମୀ, ତୋତାରାମ, ଦେବକୀନନ୍ଦନ ଖତ୍ରୀ, ଅମ୍ବିକାଦତ୍ତ ବ୍ୟାସ ଆଦି ଭାରତେନ୍ଦୁଙ୍କର ସମସାମୟିକ ଲେଖକ । ଏମାନଙ୍କର ପ୍ରଚେଷ୍ଟାରେ ହିନ୍ଦୀ-ସାହିତ୍ୟ ମହାନ୍ ପ୍ରେରଣା ଲାଭ କରି ସୁସୁପ୍ତିର ଘନାନ୍ଧକାର ମଧ୍ୟରୁ ନିର୍ଗତ ହୋଇପାରିଛି ।

—*—

( ମୟୂ )

# ହିନ୍ଦୀ କବିତାର ଧାରା

ହିନ୍ଦୀ ଆଧୁନିକ-ସାହିତ୍ୟର ଇତିହାସରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର ପ୍ରଥମ ଶଙ୍କୁ ( Fisrt land mark ) କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ କାବ୍ୟ ଇତିହାସରେ ଭାରତେନ୍ଦୁ-ଯୁଗର ଧାରା ସର୍ବପ୍ରଥମେ ବର୍ଣ୍ଣନୀୟ । ପ୍ରାଗ୍ ଭାରତେନ୍ଦୁ ଯୁଗରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ରୀତିକାବ୍ୟ, ଭକ୍ତିକାବ୍ୟ ତଥା ରୀତି-କାବ୍ୟର ଧାରା ଅକ୍ଷୁଣ୍ଣ ରହିଥିଲା । ଇଂରେଜୀ ସାହିତ୍ୟ, ପ୍ରାନ୍ତୀୟ ବଙ୍ଗୀୟ ସାହିତ୍ୟର ପ୍ରେରଣାରେ ହିନ୍ଦୀ-ଜନତା କ୍ରମଶଃ ଉଦ୍‌ବୋଧିତ ହୋଇ ଉଠିଲା । ରାଜନୈତିକ ଜାଗୃତି, ସଂସ୍କାର ଆନ୍ଦୋଳନ, ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ନୂତନ ଧାରାର ଅଭ୍ୟୁଦୟ ସଂଘଟିତ ହେଲା । ଏହି ପରିବର୍ତ୍ତିତ ପୃଷ୍ଠଭୂମିରେ ଭାରତେନ୍ଦୁଯୁଗର କାବ୍ୟ-କବିତା ଆଲୋଚନୀୟ ।

ରାଷ୍ଟ୍ରୀୟତା ଏହି ଯୁଗର ପ୍ରଧାନ ସ୍ୱର । ସର୍ବପ୍ରଥମେ ଭାରତେନ୍ଦୁ ହିଁ ଦେଶପ୍ରେମର ବାଣୀ ହିନ୍ଦୀଭାଷୀ ଜନତାକୁ ଶୁଣାଇ ଥିଲେ । ଦେଶର ଦୁର୍ଦ୍ଦଶା ବର୍ଣ୍ଣନା, ଅତୀତ ଗୌରବବୋଧର ଅଭିବ୍ୟକ୍ତି ସେତେବେଳକାର ରାଷ୍ଟ୍ରୀୟତାର ସ୍ମାରକ ଅଟେ । ଇଂରେଜମାନଙ୍କ ପ୍ରତି ସମ୍ମାନ, ରାଜଭକ୍ତି ଏଭଳି ଭାବନାରେ ନିହିତ । ଦେଶର ଦୁର୍ଦ୍ଦଶା ମୋଚନ ନିମିତ୍ତ ସରକାରଙ୍କଠାରେ ଆବେଦନ ଓ ନିବେଦନ ଦେଶପ୍ରାଣତାର ସୂଚନା ଦିଏ । ଏ ଯୁଗର ସମସ୍ତ ଲେଖକଙ୍କଠାରେ ଏହି ଭାବର ପ୍ରକାଶ ହୋଇଅଛି । 'ଭାରତ ଦୁର୍ଦ୍ଦଶା', 'ଭାରତ ବନ୍ଦନା' ପାଠକଲେ ଏହା ଜଣାଯାଏ ।

ସୁଧାର-ବାଦୀ ବା ସଂସ୍କାରମୂଳକ ଭାବଭାବନା ଏ ଯୁଗର ଅନ୍ୟ ଏକ ବୈଶିଷ୍ଟ୍ୟ । ମହାମାରୀ, ଦୁର୍ଭିକ୍ଷ, କରଭାର, ଇଂରେଜ ଶୋଷଣ ମାତର ବର୍ଣ୍ଣନାରେ ଦେଶପ୍ରୀତି ଓ ସଂସ୍କାରୀ ମନର ପରିଚୟ ମିଳେ । ଅଶିକ୍ଷା, ମଦ୍ୟପାନ, ଅସ୍ପୃଶ୍ୟତା, ବୃଦ୍ଧ ବିବାହ, ସତୀପ୍ରଥା, ଜାତିଭେଦ ଆଦିର ବିରୁଦ୍ଧରେ ସଂସ୍କାରଶୀଳ ପ୍ରବୃତ୍ତି ଦେଖାଯାଏ । ନବୀନ ଯୁଗର ରାଜନୈତିକ ତଥା ସାମାଜିକ ଚେତନା ଭାରତେନ୍ଦୁ ତଥା ତଦୀୟ ଯୁଗର ଅନ୍ୟାନ୍ୟ ଲେଖକମାନେ ମୂର୍ତ୍ତିବନ୍ତ ହୋଇଛି ।

ପ୍ରାଚୀନ ଭକ୍ତିଧାରା ଏ ଯୁଗରେ ଲୋପ ନ ପାଇବାର ଜଣାଯାଏ । ସ୍ୱୟଂ ଭାରତେନ୍ଦୁ କୃଷ୍ଣଭକ୍ତ କବି ଥିଲେ । ପ୍ରକୃତି, ଶୃଙ୍ଗାର, କୃଷ୍ଣଲୀଳା ଆଦିର ବର୍ଣ୍ଣନ ଏ ଯୁଗରେ ହେଉଥିଲା । ଭାରତେନ୍ଦୁଙ୍କର ଭକ୍ତିରସାତ୍ମକ ବର୍ଣ୍ଣନାରେ ସ୍ୱତନ୍ତ୍ର ଅନୁଭୂତି ଓ ଭାବ-ବିଦ୍‌ଗଧତାର ପରିଚୟ ମିଳେ । ତାଙ୍କର ଗଙ୍ଗାବର୍ଣ୍ଣନା ପାଠ କଲେ, ତଦୀୟ ଲେଖମାର ଗାମ୍ଭୀର୍ଯ୍ୟ ଓ ସଜୀବତା ସ୍ପଷ୍ଟ ହୋଇଥାଏ । ଚନ୍ଦ୍ରାବଳୀର ପ୍ରେମୋଦ୍‌ଗାର ଚିତ୍ରଣରେ ଯେଉଁ ମାର୍ମିକତା ନିହିତ; ତାହା ଅନବଦ୍ୟ । ସ୍ଥୂଳତଃ ଭାରତେନ୍ଦୁ ଯୁଗରେ ପ୍ରାଚୀନ ଓ ନବୀନ ଶୈଳୀ ତଥା ଭାବଧାରାର ମଧୁର ସମନ୍ୱୟ ହୋଇ ପାରିଥିଲା ।

ଅନୁବାଦ-ସାହିତ୍ୟର ସମୃଦ୍ଧି ଏ କାଳରେ ଲକ୍ଷ୍ୟ କରାଯାଇ ପାରେ । ମେଘଦୂତ, କୁମାରସମ୍ଭବ, ଋତୁସଂହାର ଆଦିର ଅନୁବାଦ ସଙ୍ଗରେ ଇଂରେଜ କବି ଗୋଲ୍‌ଡ଼ସ୍ମିଥ, ଗ୍ରେ, ପୋପ ଆଦିଙ୍କର ଲେଖାର ଅନୁବାଦ ହୋଇଥିଲା । ଏହି ଅନୁବାଦ ଫଳରେ ପ୍ରକୃତି-ବର୍ଣ୍ଣନାର ନୂତନ ରୂପ ଆସିଥିଲା । ପ୍ରକୃତିର ବର୍ଣ୍ଣନାତ୍ମକ ଶୈଳୀସ୍ଥାନରେ, ପ୍ରକୃତିର ମହିମାପୂର୍ଣ୍ଣତା ସମ୍ପାଦନ ଅନୁବାଦ ସାହିତ୍ୟରେ ହୋଇଅଛି ।

ଭାରତେନ୍ଦୁ ଯୁଗରେ ପଦ୍ୟର ଭାଷା ବ୍ରଜଭାଷା ଥିଲା । ୧୮୮୭ ଖ୍ରୀଷ୍ଟାବ୍ଦରେ ଲିଖିତ 'ଭାରତମିତ୍ର'ରେ ସେ ଖଡ଼ୀବୋଲି-ପଦ୍ୟ ପ୍ରକାଶ କରାଇଥିବାର ଜଣାଯାଏ । ନାଟକମାନଙ୍କରେ କେତେକ ସ୍ଥାନରେ ସେ ଖଡ଼ୀବୋଲି ଭାଷାର ବ୍ୟବହାର ଦେଖାଇ ଥିଲେ । ଊନବିଂଶ ଶତାବ୍ଦୀର ଶେଷ ବିଂଶ ବର୍ଷ ଖଡ଼ୀବୋଲି-ଆନ୍ଦୋଳନ ତୀବ୍ର ହୋଇ ଉଠିଥିଲା । ଗଦ୍ୟରେ ଖଡ଼ୀବୋଲିର ପ୍ରୟୋଗ ହେଉଥିଲା । ପଦ୍ୟରେ ତାହାର ପ୍ରୟୋଗ କ୍ରମଶଃ ହେବାକୁ ଲାଗିଲା । ଭାରତେନ୍ଦୁ ବ୍ରଜଭାଷାର ନୂତନ ରୂପ ଦେଇଥିଲେ ହେଁ, ଖଡ଼ୀବୋଲି ପଦ୍ୟର ସେ ହିଁ ପ୍ରାରମ୍ଭକର୍ତ୍ତା । ଶ୍ରୀଧର ପାଠକ, ରାୟ ଦେବୀପ୍ରସାଦ, ନାଥୁରାମଶଙ୍କର ଶର୍ମା ଆଦି ଖଡ଼ୀବୋଲି ଭାଷାରେ ପଦ୍ୟ ଲେଖିଥିଲେ । କେତେକ କବି ଭାରତେନ୍ଦୁଙ୍କ ସମେତ ବ୍ରଜଭାଷାରେ କବିତା ଲେଖିଥିବାର ଜଣାଯାଏ । ସ୍ଥୂଳତଃ ଏହି କାଳ ଭାଷା ଦିଗରେ ଏକ ଆନ୍ଦୋଳନର ଯୁଗ ।

ଭାରତେନ୍ଦୁ-ଯୁଗ ପରେ ମହାବୀର ପ୍ରସାଦ ଦ୍ୱିବେଦୀଙ୍କର କାଳ । ବିଂଶ-ଶତାବ୍ଦୀର ପ୍ରାରମ୍ଭରୁ ଦ୍ୱିବେଦୀ-ଯୁଗର ପ୍ରାରମ୍ଭ ହୁଏ । ସାହିତ୍ୟ କ୍ଷେତ୍ରରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର ଯେଉଁ ପ୍ରବୃତ୍ତିର ପ୍ରତିଷ୍ଠା କରିଥିଲେ—ତାହାର ସମ୍ୟକ୍ ବିକାଶ ଏ ଯୁଗରେ ହୋଇଅଛି ମାତ୍ର ନୂତନତା ବା ମୌଳିକତା ପ୍ରାପ୍ତ ନାହିଁ କହିଲେ ଚଳେ । ସଂସ୍କାର ମୂଳକ ଓ ସାମାଜିକ ଦୃଷ୍ଟିକୋଣ, ଆଦର୍ଶ-ବାଦୀ ଧାରା, ରାଷ୍ଟ୍ରୀୟ-ଭାବନା ଠିକ୍ ପୂର୍ବପରି ଅଧିକ ବ୍ୟାପକ ଭାବରେ ଦ୍ୱିବେଦୀ ଯୁଗରେ ବର୍ତ୍ତମାନ ଥିଲା । ମୈଥିଳୀଶରଣ ଗୁପ୍ତ ଏ କାଳର ପ୍ରତିନିଧି-ମୂଳକ କବି ।

ବୈଜ୍ଞାନିକ ବୌଦ୍ଧିକ ଦୃଷ୍ଟି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସାହିତ୍ୟରେ ପରିଲକ୍ଷିତ ହୁଏ । ଏହା ହିଁ ଆଧୁନିକତାର ଏକ ଦିଗ ।

ଦ୍ୱିବେଦୀ ଯୁଗର ଲେଖମାନେ ବୌଦ୍ଧିକତା ନିହିତ । ମୈଥିଳୀଶରଣ ଓ କବି ହରିଔଧଙ୍କର କୃତିରେ ଏହି ବୌଦ୍ଧିକତା ସୁସ୍ପଷ୍ଟ । ଯୁଗର ଜଟିଳ-ସମସ୍ୟାପ୍ରତି ଏ ଯୁଗର ସାହିତ୍ୟ ପାଦ ମିଳାଇପାରି ନାହିଁ । ତେଣୁ ନୀରସ ଶୁଷ୍କ ହୋଇପଡ଼ିଛି ।

ଏହିକାଳରେ ଖଡ଼ୀବୋଲି ଭାଷା ପଦ୍ୟର ମାଧ୍ୟମ ପୂର୍ଣ୍ଣରୂପରେ ହୋଇଗଲା । ଭାଷାର ଶୁଦ୍ଧତା ଓ ସରଳତା ଆସିଲା । ବ୍ରଜ ଅବଧୀର ଯେଉଁ ମିଶ୍ରିତ ପ୍ରୟୋଗ ଖଡ଼ୀବୋଲରେ ହେଉଥିଲା, ତାହା ଦୂର ହେଲା । ସଂସ୍କୃତ ବୃତ୍ତର ପ୍ରୟୋଗ, ଗଦ୍ୟମୟ ଭାଷାର ବ୍ୟବହାର ହେଲା । ସରଳ ଗଦ୍ୟ ଭାଷାରେ କବିତା ଲେଖି ଦ୍ୱିବେଦୀଜୀ ସଫଳ ହୋଇ ନାହାନ୍ତି । ସଂସ୍କୃତ ପଦାବଳୀର ପ୍ରୟୋଗ ସେ କରିଛନ୍ତି । ଦ୍ୱିବେଦୀଙ୍କର ପ୍ରଭାବରେ ସରସ୍ୱତୀ ପତ୍ରିକାର ସମ୍ପାଦନା ସୂତ୍ରରେ ଯେଉଁ କବିଗଣ ଦେଖାଦେଇଥିଲେ ତନ୍ମଧ୍ୟରେ ମୈଥିଳୀଶରଣ ଗୁପ୍ତ, ମାଧବ ଶୁକ୍ଳ, ରାମଚରିତ ଉପାଧ୍ୟାୟ, ରାମନରେଶ ତ୍ରିପାଠୀ, ଗୟାପ୍ରସାଦ ଶୁକ୍ଳ, ରୂପନାରାୟଣ ପାଣ୍ଡେ, କବି ହରିଔଧ ପ୍ରଧାନ । କବି ହରିଔଧଙ୍କର 'ପ୍ରିୟପ୍ରବାସ' ଏ ଯୁଗର ଶ୍ରେଷ୍ଠ ରଚନା । ଦ୍ୱିବେଦୀଜୀଙ୍କର ପ୍ରଭାବର ବାହାରେ ଥାଇ ଭଗବାନ ଦୀନ, ରାୟ ଦେବୀପ୍ରସାଦ ପୂର୍ଣ୍ଣ ଆଦି କବିତା ଲେଖୁଥିଲେ । ଊଣା-ଅଧିକେ ପ୍ରତ୍ୟେକ ଦ୍ୱିବେଦୀଙ୍କର ଭାବ ଓ ଶୈଳୀର ଅନୁକରଣ ପ୍ରାୟ କରିଛନ୍ତି । କେହି କେହି ମଧ୍ୟ ବ୍ରଜଭାଷାରେ ଏ ଯୁଗରେ କବିତା ଲେଖିଛନ୍ତି । ବିୟୋଗୀ ହରି ଓ ସତ୍ୟନାରାୟଣ କବିରତ୍ନ ସେମାନଙ୍କ ମଧ୍ୟରେ ପ୍ରଧାନ । କେହି କେହି ଖଡ଼ୀବୋଲି ଓ ବ୍ରଜ-ଭାଷାର ମିଶ୍ରଣ କରି ରଚନା କରୁଥିଲେ । ନାଥୁରାମ ଶଙ୍କର, ଗୟାପ୍ରସାଦ ଶୁକ୍ଳ, ଲାଲା ଭଗବାନ ଦୀନ, ରାମନରେଶ ତ୍ରିପାଠୀ ଓ ରୂପନାରାୟଣ ପାଣ୍ଡେ ତନ୍ମଧ୍ୟରେ ପ୍ରଧାନ ।

ମୈଥିଲୀଶରଣଙ୍କର ଲେଖାରେ ଇତିବୃତ୍ତାତ୍ମିକତା ରହିଛି । ଦ୍ୱିବେଦୀ ଯୁଗକୁ ଇତିବୃତ୍ତାତ୍ମକ ଯୁଗ କୁହାଯାଏ । ବର୍ଣ୍ଣନାର ପ୍ରଭାବ ଏ ଯୁଗରେ ବେଶୀ । ପ୍ରକୃତି ବର୍ଣ୍ଣନାରେ ବର୍ଣ୍ଣନାତ୍ମିକତା ଏ କାଳରେ ଅଧିକ, ପ୍ରକୃତି, ସମାଜ, ରାଷ୍ଟ୍ର, ଜୀବନର ପ୍ରକାଶରେ ଇତିବୃତ୍ତାତ୍ମିକତା ଏ କାଳରେ ପ୍ରଧାନ । ତେଣୁ ସାହିତ୍ୟ ନୀରସ ଓ ଶୁଷ୍କ ହୋଇ ଉଠିଥିଲା । ମୈଥିଲୀଶରଣଙ୍କର କୃତିରେ ଅବଶ୍ୟ କଥାତ୍ମକ ଧାରାର ଅଭାବ ନାହିଁ । ରଙ୍ଗ ମେ ଭଙ୍ଗ, ଜୟଦ୍ରଥ ବଧ, ପଞ୍ଚବଟୀ, ସାକେତ, ଯଶୋଧାରା ଆଦି ତାଙ୍କର କଥାତ୍ମକ ରଚନା । ହିନ୍ଦୁର ଜାତୀୟତା, ଜାତୀୟ ବୀର ଓ ପୌରାଣିକ ପୁରୁଷଗଣ ତାଙ୍କ ଲେଖନୀରେ ଜୀବନ୍ତ । କରୁଣାମୂଳକ ମାନବପ୍ରେମ, ବନ୍ଧୁପ୍ରେମ, ଆତ୍ମ ବଳିଦାନର ସନ୍ଦେଶ ତାଙ୍କ ଲେଖାରୁ ମିଳିଥାଏ । ସେ ଭାରତେନ୍ଦୁ ଓ ଦ୍ୱିବେଦୀଙ୍କଠାରୁ ଅଧିକ ରାଷ୍ଟ୍ରୀୟତାବାଦୀ । ସେ ମଧ୍ୟ ଭକ୍ତକବି ଓ 'ମର୍ଯ୍ୟାଦା ପୁରୁଷୋତ୍ତମ ରାମ'ଙ୍କର ଉପାସକ । 'ସାକେତ' ଓ 'ପଞ୍ଚବଟୀ' ତାହାର ପ୍ରମାଣ ।

ବିଚାରକଲେ ଜଣାଯାଏ, ଭାରତେନ୍ଦୁ ଯୁଗ ଓ ଦ୍ୱିବେଦୀ ଯୁଗର ପୃଷ୍ଠଭୂମି ଏକ । ପ୍ରକୃତ ଆଧୁନିକତା ଏ କାଳରେ ଆସି ନ ଥିଲା । ଯଥାର୍ଥ ଆଧୁନିକତା କାବ୍ୟ-କବିତା କ୍ଷେତ୍ରରେ ଛାୟାବାଦୀ କାଳରେ ଆସିଅଛି । ଏହି କାଳକୁ ସାଧାରଣତଃ ପ୍ରଥମ ମହାଯୁଦ୍ଧ ( ୧୯୧୪-୧୮ )ଠାରୁ ବିଚାର କରାଯାଇ ଥାଏ । ପୂର୍ବ ଯୁଗର ଇତିବୃତ୍ତାତ୍ମିକତା, ଉପଦେଶାତ୍ମିକତା, ଆଦର୍ଶ ଓ ନୈତିକବାଦ ପରିପୂର୍ଣ୍ଣ କାବ୍ୟଧାରାର ପ୍ରତିକ୍ରିୟା ରୂପରେ ଛାୟାବାଦୀ-ସାହିତ୍ୟର ପ୍ଲାବନ ଆସିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଇଂରେଜୀ ସାହିତ୍ୟ, ବଙ୍ଗୀୟ ସାହିତ୍ୟର ପ୍ରଭାବରେ ଏ ଧାରା ପରିପୁଷ୍ଟ ହୋଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କର 'ଗୀତାଞ୍ଜଳି'ର ପ୍ରଭାବ ଓ ପ୍ରେରଣା ଏହି ଯୁଗର

ସାହିତ୍ୟରେ ନାହିଁ ବୋଲି କହିବା ଠିକ ହେବନାହିଁ । ଦ୍ୱିବେଦୀ ଯୁଗର ନୀରସ ମରୁପ୍ରାନ୍ତରେ ରସର ସ୍ରୋତ ଛାୟାବାଦୀ କବିଗଣ ପ୍ରବାହିତ କରାଇଥିଲେ । ପ୍ରାଚୀନପନ୍ଥୀଗଣ ଏହାକୁ ନିରର୍ଥକ ଶବ୍ଦାଡ଼ମ୍ବର ବହୁଳ, ଗୀତାଞ୍ଜଳିର ଅନ୍ଧାନୁସରଣ, 'ବିଲାୟତି ଚଢ଼େଇ ମୁରବ୍‌ବା' ବୋଲି କହି ଉପହାସ କରୁଥିଲେ । ସେମାନଙ୍କ ମତରେ ଏହା କବିତା ନୁହେଁ—ବରଂ ତାର ଛାୟା । କ୍ରମଶଃ ଉପହାସାତ୍ମକ ଶବ୍ଦଟି ଶ୍ରଦ୍ଧା ଓ ସମ୍ମାନର ସହିତ ଏ ଯୁଗର ସାହିତ୍ୟିକ-ଧାରାକୁ ପରିଚିତ କରାଇଲା ।

କୌଣସି ଗୋଟିଏ ଧାରା ହଠାତ୍ ଆକସ୍ମିକ ଭାବରେ ସାହିତ୍ୟରେ ଦେଖା ଦିଏ ନାହିଁ । ପୂର୍ବଯୁଗରେ ତାହାର ସୂଚନା ମିଳିଥାଏ । ସେହିପରି ପ୍ରଥମ ମହାସମର ପୂର୍ବରୁ ଦ୍ୱିବେଦୀ କାଳରେ ଛାୟାବାଦର ଅଙ୍କୁରୋଦ୍‌ଗମ ଲକ୍ଷ୍ୟ କରାଯାଇପାରେ । ଶ୍ରୀଧରପାଠକଙ୍କର 'ସ୍ୱର୍ଗୀୟବୀଣା', ମୈଥିଳୀଶରଣଙ୍କର 'ଝଙ୍କାର' ଓ 'ମଙ୍ଗଳଘଟ', ପଣ୍ଡିତ ରାମନରେଶ ତ୍ରିପାଠୀ, ପଣ୍ଡିତ ମୁକୁଟଧର ପାଣ୍ଡେ, ସତ୍ୟନାରାୟଣ କବିରତ୍ନଙ୍କର ଲେଖା ପାଠକଲେ, ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହୁଏ ।

ଛାୟାବାଦୀ କବିତାରେ କବିର ବୈୟକ୍ତିକତା ଲକ୍ଷ୍ୟଣୀୟ । କବିଗଣ ଆଉ ବୀର ପୁରୁଷ, ରାଜା, ଧର୍ମବ୍ୟକ୍ତିର ଜୀବନର ଚିତ୍ର ନ ଦେଇ; ନିଜର ସୁଖ ଦୁଃଖ, ଆଶାନିରାଶା, ଆକାଂକ୍ଷାକାମନା, ହର୍ଷ ବିଷାଦର ମାର୍ମିକସରସ, ବ୍ୟଞ୍ଜନାତ୍ମକ ବର୍ଣ୍ଣନା ଦେବାକୁ ଏ ଯୁଗରେ ଆରମ୍ଭ କଲେ । ଛାୟାବାଦୀ କଳାକାରଗଣ ସୌନ୍ଦର୍ଯ୍ୟବାଦୀ । ଏହି ସୌନ୍ଦର୍ଯ୍ୟ-ବାଦରେ ଶାରୀରିକ କାମବାସିକ୍ତ ଭାବ ନଥିଲା । ଅନ୍ତଃ-ସୌନ୍ଦର୍ଯ୍ୟ ବା ଆତ୍ମିକ-ସୌନ୍ଦର୍ଯ୍ୟ ପ୍ରତିପାଦନ ହିଁ ଏଥିରେ ଦେଖାଯାଏ । ଜୀବନ ଆଉ କବିତା ମଧ୍ୟରେ ଅଙ୍ଗାଙ୍ଗୀ ସମ୍ବନ୍ଧ

ପ୍ରତିଷ୍ଠିତ ହେଲା । ଜୀବନର ଉଲ୍ଲାସ, ବିଳାସ, ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟରେ କବିପ୍ରାଣ ଉଦ୍‌ବେଳିତ ହୋଇଥିଲେ ହେଁ, ତାହାର କ୍ଷଣ ସ୍ଥାୟିତ୍ୱ ଓ ନଶ୍ୱରତା ପ୍ରତି କବିପ୍ରାଣ ସଚେତ ହୋଇଛି । ଆଲୋକ-ଅନ୍ଧାର, ସୁଖ-ଦୁଃଖ, ବିରହ-ମିଳନରେ କବିହୃଦୟରେ ଏକ ପ୍ରକାର ଭାବ ଓ ଦୃଷ୍ଟିଭଙ୍ଗୀ ଦେଖାଦେଇଛି । କବି ଏଠାରେ ସୁଖ-ଦୁଃଖର ସମ୍ମିଳନରେ ଜୀବନର ଗତିଶୀଳତା ଉପଲବ୍‌ଧି କରି ଅବିରାମ ସାଧନାରେ ସାର୍ଥକତା ଦେଖିଛନ୍ତି । ପ୍ରେମ ବର୍ଣ୍ଣନାରେ ଭୋଗ-ବାସନା ଓ ଭୌତିକତା ନାହିଁ । ପ୍ରେମ୍‌ର ଆଧ୍ୟାତ୍ମିକ ରୂପ ପ୍ରଦର୍ଶିତ । ସଂଯୋଗ-ଜନିତ ପ୍ରେମାନନ୍ଦଠାରୁ ବିୟୋଗ-ଜନିତ ପ୍ରେମାନନ୍ଦର ମହନୀୟତା ପ୍ରତିପାଦିତ ହୋଇଛି । ନାରୀରୂପ ବର୍ଣ୍ଣନାରେ କାଳ୍ପନିକତା, ଭାବୁକତା ଓ ଅଲୌକିକତା ନିହିତ । କବିବେଦନାରେ ମହନୀୟତା ଅନୁଭବ କରିଛନ୍ତି । କବିଙ୍କ ମତରେ —ବେଦନାର ରାଜ୍ୟ ସ୍ୱର୍ଗଠାରୁ ପବିତ୍ର ଓ ବେଦନାହୀନ ଜୀବନ ଜୀବନ ପଦ-ବାଚ୍ୟ ନୁହେଁ ।

ଗ୍ରୀଷ୍ମାବାଣୀ କବିତାରେ ପ୍ରକୃତିର ସ୍ଥାନ ମହନୀୟ । ପ୍ରକୃତିର ରମଣୀୟତାରେ କବି ମୁଗ୍‌ଧ ନ ହୋଇ ତା ସହିତ ଜୀବନର ସାମଞ୍ଜସ୍ୟ ଦେଖାଇଛନ୍ତି । ଗ୍ରୀଷ୍ମାବାଣୀ କବି ଦୁର୍ବାଦଳରେ ଶୀକର ପଂକ୍ତି ସନ୍ଦର୍ଶନକରି ମଣିଷର ବ୍ୟଥାସିକ୍ତ ଲୋତକର ସନ୍ଧାନ ପାଇଛି । କେଉଁଠି ଅବା କବି ପ୍ରକୃତିରେ ଅସୀମ-ସତ୍ତାର ସନ୍ଧାନ ପାଇଛି । ପ୍ରକୃତିର ମାନବୀୟ-କରଣ ଏ କାଳର ପ୍ରଧାନ ଧାରା । ପ୍ରକୃତିର ଉପାଦାନରେ ସ୍ତ୍ରୀ-ସୌନ୍ଦର୍ଯ୍ୟର ଆରୋପ କରାଯାଇଛି । ଉଷା, ସନ୍ଧ୍ୟା, ରଜନୀ, ଲହରୀ, କିରଣକୁ ନାୟିକା ରୂପରେ କବି ଦେଖିପାରିଛି । ପ୍ରକୃତିର କାର୍ଯ୍ୟ-କଳାପରେ ପ୍ରେମିକ-ପ୍ରେମିକାଙ୍କର ହାବଭାବ ଆରୋପିତ ହୋଇଛି ।

ନାରୀ ଯୁଗେ ଯୁଗେ କବିତାର ପ୍ରମୁଖ ବିଷୟ ହୋଇ ଆସିଛି । ଛାୟାବାଦୀ ଯୁଗରେ ନାରୀ-ଚରିତ୍ରର ମହନୀୟତା ପ୍ରତିପାଦିତ ହୋଇଛି । ନାରୀକୁ ପ୍ରେୟସୀ ଓ ପ୍ରେମିକା ରୂପରେ ଦେଖାଇବା ସଙ୍ଗେ ସଙ୍ଗେ କବିମାନେ ନାରୀର ମଧୁମୟୀ ରୂପ ତଥା ପତ୍ନୀରୂପ ଦେଖାଇଛନ୍ତି । ଦାମ୍ପତ୍ୟ-ପ୍ରେମର ମଧୁମୟ ଛବି କବିଗଣ ଅଙ୍କନ କରିଛନ୍ତି । ଜୟଶଙ୍କର ପ୍ରସାଦ ତଦୀୟ 'କାମାୟିନୀ'ରେ ନାରୀକୁ ପତ୍ନୀ, ପ୍ରେୟସୀ, ଗୃହିଣୀ ଆଦିରୂପରେ ଦେଖିଛନ୍ତି । ସେ ନାରୀ ପର ଶାନ୍ତ ଓ ଶୀତଳ ଚିତ୍ର ଦେଇ ଯାଇଛନ୍ତି । କବି ନିରାଲା ନାରୀକୁ ଶକ୍ତିମୟୀ ଓ ପୁରୁଷର କଲ୍ୟାଣମୟୀ ରୂପେ ଚିତ୍ରଣ କରି ଅଛନ୍ତି । ସ୍ୱଭାବତଃ ପ୍ରସାଦ ଓ ନିରାଲାଙ୍କ ଦୃଷ୍ଟି ସୌନ୍ଦର୍ଯ୍ୟାନୁଭୂତି ଜଡ଼ିତ । ନାରୀର ଅବ୍ୟକ୍ତ ରହସ୍ୟମୟ ରୂପ ସେମାନେ ଦେଖି ପାରିଛନ୍ତି । ଛାୟାବାଦୀ-କବିତାରେ ନାରୀ କେବଳ ପୁରୁଷର କ୍ରୀଡ଼ନକ ହୋଇ ରହିନାହିଁ ।

ଛାୟାବାଦୀ ଯୁଗରେ ଛନ୍ଦ-ପ୍ରୟୋଗରେ ବିପ୍ଳବ ଦେଖାଦେଲା । ଏ କାଳରେ ନବୀନ ସଂସ୍କୃତ ଛନ୍ଦ, ମାତ୍ରିକ-ଛନ୍ଦର ନୂତନ ରୂପ ପ୍ରୟୋଗ ହେଉଥିଲା । ଅଭିବ୍ୟଞ୍ଜନାର ସଫଳତା ନିମିତ୍ତ ପ୍ରତି-ଚରଣରେ ଅକ୍ଷରର କ୍ରମ ବୃଦ୍ଧି ଓ ହ୍ରାସ କରା ଯାଉଥିଲା । ବଙ୍ଗଳାରେ ବ୍ୟବହୃତ ହେଉଥିବା ଛନ୍ଦର ଆଦର ଦେଖାଯାଇ ଥିଲା । ମୁକ୍ତ-ଛନ୍ଦର ବ୍ୟବହାର ବେଶୀ ହେଉଥିଲା । ସାଧାରଣ ପ୍ରଚଳିତ ଶବ୍ଦସ୍ଥାନରେ ଅସାଧାରଣ ନୂତନ ଗଠିତ ଶବ୍ଦର ବ୍ୟବହାର ହେଉଥିଲା । ଇଂରାଜୀରୁ ଅନୂଦିତ ଶବ୍ଦ, ବଙ୍ଗଳାରୁ ଆନୀତ ଶବ୍ଦ, ଇଂରେଜୀ-ବଙ୍ଗଳା-ମିଶା ଶବ୍ଦ, ସମାସାନ୍ତ ପଦର ପ୍ରଚଳନ ନ ଥିଲା । ଅଭିଧାତ୍ମକ ପ୍ରୟୋଗ ବ୍ୟାହତ ହୋଇ

ବ୍ୟଞ୍ଜନାତ୍ମିକତା ଓ ଲାକ୍ଷଣିକତା ଦେଖାଦେଲା । କବିତାର ଗେୟତା ଉପରେ ଦୃଷ୍ଟି ଅଧିକ ଦିଆ ଯାଉଥିଲା ।

ଛାୟାବାଦୀ-କବିତାରେ ଅଦୃଷ୍ଟ ସତ୍ତାପ୍ରତି ପ୍ରେମଭାବନା, ଲୌକିକ ପ୍ରେମରେ ଆଧ୍ୟାତ୍ମିକ ପ୍ରେମର ପ୍ରକାଶ ଦେଖାଯାଏ । ଅପ୍ରାକୃତିକରେ ପ୍ରାକୃତ, ଅମାନବରେ ମାନବ, ଜଡ଼ରେ ଚୈତନ୍ୟ, ସ୍ଥୂଳରେ ସୂକ୍ଷ୍ମ ବୋଧ ଏହି ଧାରାର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଦାର୍ଶନିକତା ବେଦାନ୍ତ ଉପନିଷଦ ଉପରେ ପ୍ରତିଷ୍ଠିତ ହୋଇଛି । ଲୌକିକକୁ ଅଲୌକିକ, ନଗଣ୍ୟକୁ ଉଚ୍ଚତମ ସୋପାନରେ ଦେଖିବା ଛାୟାବାଦୀ-କବିତାର ମୂଳ । ପରିଣାମରେ ରହସ୍ୟା-ତ୍ମିକତା ଏଠାରେ ଦେଖାଯାଏ । ଏହି ରହସ୍ୟାତ୍ମିକତା ରବୀନ୍ଦ୍ର-ସାହିତ୍ୟର ଅନୁରୂପ କହିଲେ ଅତ୍ୟୁକ୍ତିକର ହେବ ନାହିଁ ।

ଛାୟାବାଦୀ-କବିମାନଙ୍କ ମଧ୍ୟରେ ଜୟଶଙ୍କର ପ୍ରସାଦ, ସୁମିତ୍ରାନନ୍ଦନ ପନ୍ତ, ସୂର୍ଯ୍ୟକାନ୍ତ ତ୍ରିପାଠୀ 'ନିରାଲା', ମହାଦେବୀ ବର୍ମା ପ୍ରମୁଖ ଅଟନ୍ତି । ଅବଶ୍ୟ ପ୍ରତ୍ୟେକଙ୍କର ନିଜସ୍ୱ ଓ ସ୍ୱକୀୟତା ଅନେକ ଦିଗରେ ରହିଛି । ତାହା ସତ୍ୟ ହେଲେହେଁ ଯୁଗର ପ୍ରଭାବ ସମସ୍ତଙ୍କର ଉପରେ ନିହିତ । ଜୟଶଙ୍କର ପ୍ରସାଦଙ୍କର 'କାମାୟନୀ' ମହାକାବ୍ୟ ଏ ଯୁଗର ପ୍ରଧାନ କୃତି । ଉଚ୍ଛ୍ୱାସ, ବୀଣା, ଗ୍ରନ୍ଥି, ପଲ୍ଲବ, ଗୁଂଜନ ଆଦି ସୁମିତ୍ରାନନ୍ଦନଙ୍କର କୃତି । ଅନାମିକା, ପରିମଲ ଆଦି ନିରାଲାଙ୍କର ଲେଖା । ନିରାଲା ବିଦ୍ରୋହୀ-କବି । ପ୍ରାଚୀନ ଯୁଗର ରୀତିନୀତି, ବିଚାରଧାରା, ସାହିତ୍ୟିକ ତଥା ସମାଜିକ ଭାବଭାବନା ବିରୁଦ୍ଧରେ ସେ ଲେଖନୀ ଚାଳନ କରିଛନ୍ତି । ନୀହାର, ରଶ୍ମି, ନୀରଜା, ଯାମା, ସାନ୍ଧ୍ୟଗୀତି, ଦୀପଶିଖା ଆଦି ମହାଦେବୀ ବର୍ମାଙ୍କର କୃତି । ଭାବର ସୂକ୍ଷ୍ମତା, ଚରିତ୍ରଚିତ୍ରଣ ଓ ମଣ୍ଡନକଳା ତାଙ୍କର ଲେଖନୀର ମହନୀୟତା ପ୍ରତିପାଦନ କରେ । ଲୌକିକ ପ୍ରେମ

ଭୌତିକତାର ସ୍ପର୍ଶରେ ଅଲୌକିକ ସୀମାରେ ତାଙ୍କର ଲେଖନୀଦ୍ୱାରା ଉପନୀତ ହୋଇ ପାରିଛି । ବିରହ ଓ ବିୟୋଗରେ ନାରୀ କବି ମହାମାୟ-ସୁଖର ସନ୍ଧାନ ପାଇଛନ୍ତି । ଏମାନଙ୍କ ବ୍ୟତୀତ ମୋହନଲାଲ ମହତୋ ବିୟୋଗୀ, ମହାଦେବୀ ବର୍ମା, ରାମକୁମାର ବର୍ମା, ବଚନ, ଗୁରୁଭକ୍ତ ସିଂହ ଆଦି ଛାୟାବାଦୀ କବି ଅଟନ୍ତି । ଏ ଯୁଗରେ ନିରାଲାଙ୍କର ବେଦାନ୍ତବାଦ, ପ୍ରସାଦଙ୍କର ଆନନ୍ଦବାଦ, ପନ୍ତଙ୍କର ପ୍ରକୃତିବାଦ, ସେମାନଙ୍କର ବ୍ୟକ୍ତିତ୍ୱର ପରିଚୟ ଦିଏ ।

୧୯୩୬ ମସିହାପରେ ହିନ୍ଦୀସାହିତ୍ୟ କ୍ଷେତ୍ରରେ ପ୍ରଗତିବାଦୀ ଧାରା ଦେଖାଦେଲା । ସମାଜବାଦ ଓ ସାମ୍ୟବାଦର ଚର୍ଚ୍ଚା ହେବାକୁ ଲାଗିଲା । ମଜଦୁର, କୃଷକ, ପଲ୍ଲୀବାସୀର ଜୀବନ, ସାମାଜିକ ଅନାଚାର କାବ୍ୟର ବର୍ଣ୍ଣନୀୟ ବିଷୟ ହେଲା । ଏ ଧାରାରେ ବ୍ୟକ୍ତି-ଚେତନା ଅପେକ୍ଷା, ସମାଜଚେତନା ତଥା ବର୍ଗ-ଚେତନା, ମନୋବିଶ୍ଳେଷଣାତ୍ମକ ଭାବ ଅତ୍ୟଧିକ ଅଟେ । ମାର୍କ୍ସ ବାଦୀ ଭୌତିକଦୃଷ୍ଟି ଏ ସାହିତ୍ୟରେ ମୂଳଭାବ । ପ୍ରଗତିବାଦୀ ସାହିତ୍ୟର ଅଙ୍କୁରୋଦ୍‌ଗମ ପ୍ରସାଦ, ପନ୍ଥ, ନରେନ୍ଦ୍ର, ବଚନ, ଭଗବତୀଙ୍କ ଲେଖାରୁ ହୋଇଛି । ଶ୍ରୀମନ ନାରାୟଣ ଅଗ୍ରବାଲଙ୍କର 'ସେଠୀକା ରୋଗ' ସବୁ ପ୍ରଥମେ ଶ୍ରମର ମହତ୍ତ୍ୱ ପ୍ରଦର୍ଶନ କରିଥିଲା । କବି 'ଅଞ୍ଚଳ' ଧର୍ମ, ସାମାଜିକ ବନ୍ଧନ ଓ ଈଶ୍ୱରଙ୍କ ପ୍ରତି ବିଶ୍ୱାସର ବିରୁଦ୍ଧାତ୍ମକ ଭାବଭାବନା ଆଣିଦେଲେ । ଫ୍ରାୟଡ୍‌ଙ୍କର ପ୍ରଭାବରେ ଯୌନପ୍ରତି ତୀବ୍ର ଆକର୍ଷଣ ଏହି ଧାରାରେ ଦେଖାଯାଏ । କବିତା କ୍ରମଶଃ କଳା, ସୌନ୍ଦର୍ଯ୍ୟ, ଆଧ୍ୟାତ୍ମିକତା ଓ ନୈତିକତାର ଦୂରକୁ ଘୁଞ୍ଚିଗଲା । ବହିର୍ଜଗତକୁ ବାସ୍ତବ ରୂପରେ ଦେଖିବାର ଚେଷ୍ଟା ଅଧିକତର ହେଲା । ନାରୀର ଅଶୋଭନୀୟ ଚିତ୍ରଣ ଦେଖାଦେଲା । କେତେକ ସମାଲୋଚକ କହିଛନ୍ତି ଯେ, ଏ ଶ୍ରେଣୀର ସାହିତ୍ୟରେ

କବିତାର କିନ୍ତୁ ମହାର୍ଘ୍ୟତା ନାହିଁ । ଭାଷାର ଗଦ୍ୟାତ୍ମିକତା ଏହି ଯୁଗର କବିତାରେ ଦେଖାଯାଏ । ସୁମିତ୍ରାନନ୍ଦନଙ୍କର 'ଯୁଗବାଣୀ', ଗ୍ରାମ୍ୟା, ନବୀନଙ୍କର 'କୁକୁରମୁତ୍ତା', 'ଅଣିମା', 'ବେଲା', 'ନୟେପତ୍ତେ', ଶ୍ରୀମନ ନାରାୟଣ ଅଗ୍ରବାଲଙ୍କର 'ମାନବ', 'ରୋଟୀକା ରାଗ' ଏ ଯୁଗର ପ୍ରଧାନ ରଚନା । ଫ୍ରାୟଡ଼, ପୁସ୍କିନ, ଗର୍କି, ଇଲିଅଟ, ଲରେନ୍‌ସ ଆଦି ପାଶ୍ଚାତ୍ୟ ଲେଖକ ଏ ଶ୍ରେଣୀର କବିଗଣର ପ୍ରେରଣାଦାୟୀ ଶକ୍ତି । ପ୍ରଗତିବାଦୀ ସାହିତ୍ୟ ରାଜନୀତି ସହିତ ସଂପୃକ୍ତ ହୋଇ ଉଠିଛି ।

ଅତ୍ୟାଧୁନିକ କାଳରେ ପ୍ରଗତିବାଦୀଧାରା ଅକ୍ଷୁଣ୍ଣ ରହିଛି । ଏହା ହେଲେ ମଧ୍ୟ ଅତ୍ୟାଧୁନିକ କାଳର କବିତାକୁ 'ପ୍ରୟୋଗବାଦୀ' ଧାରା ବୋଲି କୁହାଯାଏ । କବି ଅଜ୍ଞେୟଙ୍କର 'ତାରସପ୍ତକ' ନାମକ କବିତା ସଂକଳନ ସମୟ (୧୯୪୩) ରୁ ହିନ୍ଦୀ-ସାହିତ୍ୟ କ୍ଷେତ୍ରରେ ନୂତନ ପ୍ରବୃତ୍ତିର ସୂଚନା ମିଳୁଅଛି । ଆଜି ମାନବ ଓ ତାର ପ୍ରତିନିଧି ସ୍ଥାନରେ ଅଧିଷ୍ଠିତ ଥିବା କବି ନାନା ବିଷମତାର ସମ୍ମୁଖୀନ ହୋଇଅଛି । ଯୌନ-କଳ୍ପନାର ପ୍ରକାଶ ଉପରେ ସମାଜ ଓ ନୈତି-କତାର ବନ୍ଧନ ନିହିତ । ଆଦର୍ଶ ଓ ବାସ୍ତବ ଜୀବନମଧ୍ୟରେ ଘୋର ଅସାମଞ୍ଜସ୍ୟ ପରିଲକ୍ଷିତ । ବର୍ଗଚେତନା, ମାତିନିୟମର ବନ୍ଧନରେ ମାନବ-ପ୍ରାଣର ସହଜ ପ୍ରକାଶ ପ୍ରତିହତ । ଏହିପରି ଭାବ-ଭାବନା ପ୍ରୟୋଗ-ବାଦୀ କବିତାରେ ଏବେ କବିଗଣ ପ୍ରଦାନ କରୁଅଛନ୍ତି । ଅଭେଦ୍ୟ-କ୍ଷେତ୍ରରେ ପ୍ରବେଶ କରିବାର ସ୍ୱାଭାବିକ ପ୍ରବୃତ୍ତି ସେମାନଙ୍କ ଠାରେ ଦେଖାଦେଉଛି । କବି ଅବଚେତନସ୍ତରରେ ପ୍ରବେଶ କରି ମନୁଷ୍ୟର ଗୁହ୍ୟଭାବ ଓ ଚିନ୍ତାକୁ ଏବେ ତନ୍ନ ତନ୍ନ କରି ବିଶ୍ଳେଷଣ କରିବାରେ ଲାଗିଛି । ଜୀବନ ଓ ବ୍ୟକ୍ତିର ଯେଉଁ ଯଥାର୍ଥ ସ୍ୱରୂପର ପ୍ରଦର୍ଶନ ସାମାଜିକ ଓ ନୈତିକ ଦୃଷ୍ଟିରୁ ଅବାଞ୍ଛନୀୟ—ତାହାକୁ

ପ୍ରକାଶ କରିବାରେ ଆଜ ପ୍ରୟୋଗ-ବାଦୀ କବିର କୁଣ୍ଠା ନାହିଁ । କବି ଅତି ଯଥାର୍ଥବାଦୀ ( Sur Realism ) ହୋଇ ମଣିଷ, ପ୍ରକୃତି, ସମାଜର ସୁସ୍ଥ ହେଉ ବା ବୀଭତ୍ସ ହେଉ ସମସ୍ତ ଚିତ୍ର ପ୍ରଦର୍ଶନ କରି ଚାଲିଛି । ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଆଧିକ୍ୟ ଓ ଯୌନ-ତତ୍ତ୍ୱର ଘନପ୍ରଭାବ ଫଳରେ ମାନବର ଯଥାର୍ଥ କୁରୂପତା ପ୍ରକାଶ ପାଉଅଛି । କବିତାର କ୍ଷେତ୍ର ଅତି ବ୍ୟାପକ ହେଉଅଛି । ଅଭିବ୍ୟକ୍ତିର ନବୀନ-ମାଧ୍ୟମମାନ ଦେଖା ଯାଉଅଛି । କବିତା ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରାଯାଉଛି । ପ୍ରୟୋଗବାଦୀ କବିଗଣ ମୁକ୍ତକ ଛନ୍ଦ (Free verse) ର ନାନା ଶୈଳୀ ପ୍ରବର୍ତ୍ତନ କରୁଅଛନ୍ତି । ଏହି ନୂତନ ଧାରାର କବିତାକୁ କେହି କେହି ବ୍ୟାପକ ପ୍ରଗତିବାଦୀ ସାହିତ୍ୟର ଅନ୍ତର୍ଭୁକ୍ତ କରି ବିଚାର କରି ଯାଇଛନ୍ତି । କିନ୍ତୁ ଯଥାର୍ଥରେ କହିବାକୁ ଗଲେ ଆଧୁନିକ କବିତାର ଭାବ, ଶୈଳୀ, ଉପାଦାନ, ବିଚାରଧାରା କିଛି ସ୍ଥିରତା ଲାଭ କରିନାହିଁ । ପ୍ରୟୋଗବାଦୀମାନେ କେବଳ ବିଭିନ୍ନ କ୍ଷେତ୍ରରେ ପରୀକ୍ଷାମାନ କରୁଛନ୍ତି । ତେଣୁ ସେମାନେ ମାର୍ଗର ସନ୍ଧାନ ପାଇନାହାନ୍ତି, ବରଂ ମାର୍ଗର ସନ୍ଧାନରେ ଅଛନ୍ତି ବୋଲି କୁହାଯାଇ ପାରେ । ସମାଜ ଓ ସମୟର କଷୋଟି ପଥରରେ ତାହାର ମୂଲ୍ୟାଙ୍କନ ଆପେ ହୋଇଯିବ । ଏହି ଧାରାର ତରୁଣ କବିମାନଙ୍କ ମଧ୍ୟରେ ରାମବିଲାସ ଶର୍ମା, ଧର୍ମବୀରଶରଣ, ଅଜ୍ଞେୟ, ଭାରତଭୂଷଣ, ନେମିଚନ୍ଦ୍ରଜୈନ୍ୟ, ତ୍ରିଲୋଚନଶାସ୍ତ୍ରୀ, ଶ୍ୟାମଶେଖର ବାହାଦୁରସିଂହ, ଗଜାନନ ମୁକ୍ତିବୋଧ, ପ୍ରଭାକରମାଚଚ୍ଛେ୍ୟ, ଶିବମଙ୍ଗଳସିଂହ 'ସୁମନ', ଶୀଳ, ରାଙ୍ଗେୟରାଘବ, ଗିରିଜାକୁମାର ମାଥୁର ପ୍ରଧାନ । ସେମାନେ ପ୍ରେମ, ଦୟା ସୌନ୍ଦର୍ଯ୍ୟର ନବୀନ ମୂଲ୍ୟାଙ୍କନ କରିବାରେ ଚେଷ୍ଟିତ ।

ଏ ଯେଉଁ ନୂତନ ଧାରା ଆସିଛି—ସେଥିରେ ମାନବ-ମୂଲ୍ୟର ବିଘଟନ ତ ହେଉଛି, ତା ଛଡ଼ା ନାସ୍ତିକତା ଓ ଯୁଦ୍ଧ-ବିଭୀଷିକାର ସ୍ୱର ପ୍ରବଳ ହେଉଅଛି । ସମାଲୋଚକଗଣ ଯଥାର୍ଥରେ କହିଛନ୍ତି ଯେ ଶ୍ରେଷ୍ଠ-ସାହିତ୍ୟର ଗୁଣ ଏବେ ଆଉ କବିତାରେ ନାହିଁ । ନିଜ ଦେଶର ସଂସ୍କୃତି, ପରମ୍ପରା ପ୍ରତି ଅବହେଳା କରି ପଶ୍ଚିମର ପରମ୍ପରା ଓ ଧାରାକୁ ନିଜର କରିବାର ଯେଉଁ ପ୍ରଚେଷ୍ଟା ତାହା ଶ୍ଳାଘ୍ୟ କି ନୁହେ ତାହା ଆଜି ବିଚାର୍ଯ୍ୟ ବିଷୟ ହୋଇ ପଡ଼ିଅଛି । ତେଣୁ ବର୍ତ୍ତମାନର କବିତା ଭାରତୀୟ-ସଂସ୍କୃତିର ପ୍ରତୀକ ନୁହେଁ । କବିତା ପରମ୍ପରାରୁ ବିଚ୍ଛିନ୍ନହୋଇ ଜନତାର ଆଦର ଏବେ ଲାଭ କରିପାରୁ ନାହିଁ । ବିଜ୍ଞାନ ଓ ରାଜନୀତିର କବଳରେ ତାହା ନୀରସ ଶୁଷ୍କ ହୋଇ ପଡ଼ିଅଛି ।



(୪ର୍ଥ)

# ହିନ୍ଦୀ ଉପନ୍ୟାସର ଉତ୍ପତ୍ତି ଓ ବିକାଶ

ଭାରତୀୟ ସାହିତ୍ୟରେ ଆଧୁନିକ ଯୁଗ ଉପନ୍ୟାସ-ପ୍ରାଧାନ୍ୟ କାଳ । ପାଶ୍ଚାତ୍ୟ ସାହିତ୍ୟର ପ୍ରେରଣାରେ ଭାରତୀୟ-ଉପନ୍ୟାସର ଜନ୍ମ । ହିନ୍ଦୀ-ଉପନ୍ୟାସ ମୁଖ୍ୟତଃ ଇଂରାଜୀ ଓ ବଙ୍ଗଳାର ଅନୁଧ୍ୟାନରୁ ସୃଷ୍ଟ । ଊନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧରେ 'ଉଦୟଭାନୁ ଚରିତ', 'ରାଣୀ କେତକୀ କୀ କହାନୀ', 'ନାସିକେତୋପାଖ୍ୟାନ' ଆଦି ଯେଉଁ ରଚନା ମିଳେ ତାହା ଉପନ୍ୟାସ-ପଦବାଚ୍ୟ ନୁହେଁ ।

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଅର୍ଥାତ୍ ଭାରତେନ୍ଦୁ ଯୁଗ ହିଁ ଉପନ୍ୟାସ-ସୃଷ୍ଟିର ପ୍ରାରମ୍ଭକାଳ । ତେବେ ମୌଳିକ-କୃତି ଏ କାଳରେ ବେଶୀ ନ ଥିଲା । ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର 'ପୂରନ-ପ୍ରଭା ଔର ଚନ୍ଦ୍ରପ୍ରଭା' ମରାଠୀ-ଅନୂଦିତ ଉପନ୍ୟାସ । 'ଶୁକବତ୍ତୀସୀ', 'ବାଗୋ ବହାର', କସ୍‌ସା ତୋତା ମୈନା' ଆଦି ପାରସୀ-ଅନୂଦିତ କୃତି । ବଙ୍ଗଳାରୁ ଅନେକ ଉପନ୍ୟାସ ମଧ୍ୟ ଏକାଳରେ ଅନୂଦିତ ହୋଇଥିଲା । ଶ୍ରୀନିବାସ ଦାସଙ୍କର 'ପରୀକ୍ଷାଗୁରୁ' (୧୮୮୪) ଏ ଯୁଗର ପ୍ରଥମ ମୌଳିକ ସୃଷ୍ଟି । ଭାଷାଶୈଳୀ, ଭାବଭଙ୍ଗୀରେ ଇଂରେଜୀ-ପ୍ରଭାବ ଏଥିରେ ଢେର ବେଶୀ ।

ଏହା ପରେ ହିନ୍ଦୀ କଥା—ସମ୍ରାଟ ପ୍ରେମଚନ୍ଦ୍ରଙ୍କର ଆବିର୍ଭାବ ହୁଏ । ସମାଲୋଚକଗଣ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ପ୍ରେମଚନ୍ଦ୍ରଙ୍କର 'ସେବାସଦନ' ଉପନ୍ୟାସର ରଚନା କାଳ (୧୯୧୮

ପ୍ରକାଶିତ) ପର୍ଯ୍ୟନ୍ତ ସମୟକୁ ଉପନ୍ୟାସ-ସୃଷ୍ଟିର ପ୍ରଥମ ଚରଣ ବୋଲି ଗ୍ରହଣ କରନ୍ତ । ୧୯୧୮ଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ସମୟ ଦ୍ୱିତୀୟ ଚରଣରୂପେ ଗୃହୀତ ହୁଏ । ପ୍ରେମଚନ୍ଦ୍ରଙ୍କର ସର୍ବଶ୍ରେଷ୍ଠ କୃତି 'ଗୋଦାନ' ୧୯୩୬ ମସିହାରେ ରଚିତ ହୋଇଥିଲା । ଏହାପରେ ହିନ୍ଦୀ-ଉପନ୍ୟାସର ଅଧୁନାତନ ଯୁଗର ପ୍ରାରମ୍ଭ ହୁଏ। ତେଣୁ ହିନ୍ଦୀ-ଉପନ୍ୟାସର ଉତ୍ପତ୍ତି ଓ ବିକାଶ ପ୍ରାୟ ଷାଠିଏ ସତୁରି ବର୍ଷର କଥା ।

ଏହି କାଳ ମଧ୍ୟରେ ଯେଉଁ ସୃଷ୍ଟି ହୋଇଅଛି, ତାହାକୁ ବିଷୟବସ୍ତୁ ଦିଗରୁ ପାଞ୍ଚୋଟି ପ୍ରଧାନ ଭାଗରେ ବିଭକ୍ତ କରାଯାଇ ପାରେ—ସାମାଜିକ, ରାଷ୍ଟ୍ରୀୟ ବା ରାଜନୈତିକ, ଐତିହାସିକ, ଐୟ୍ୟାରୀ ବା ତିଲସ୍ମୀ, ଜାସୁସୀ । ସାମାଜିକ ଉପନ୍ୟାସକୁ ଚାରୋଟି ଉପ ବିଭାଗରେ ବିଭକ୍ତ କରାଯାଇପାରେ, ଯଥା—ଉଦ୍ଦେଶ୍ୟପ୍ରଧାନ, ରସପ୍ରଧାନ, ବସ୍ତୁପ୍ରଧାନ, ଚରିତ୍ରପ୍ରଧାନ ।

ଉଦ୍ଦେଶ୍ୟପ୍ରଧାନ ଉପନ୍ୟାସରେ ସମାଜସଂସ୍କାର, ଶିକ୍ଷା ଓ ପ୍ରଚାରର ଭାବନା ନିହିତ । 'ପୂରନପ୍ରଭା ଔର ଚନ୍ଦ୍ରପ୍ରଭା' ଓ 'ପରୀକ୍ଷାଗୁରୁ' ଏପରି ରଚନାର ମୂଳଭିତ୍ତି । ବାଳକୃଷ୍ଣ ଭଟ୍ଟ, ରାଧାକୃଷ୍ଣ ଦାସ, କିଶୋରୀଲାଲ ଗୋସ୍ୱାମୀ ଆଦି ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଉଦ୍ଦେଶ୍ୟ-ମୂଳକ ଉପନ୍ୟାସ ଲେଖି ଯାଇଛନ୍ତି । ଏମାନଙ୍କ ଲେଖାରେ ଆର୍ଯ୍ୟ-ସମାଜବାଦୀଙ୍କର ବିରୋଧ, ସନାତନ ଧର୍ମର ପ୍ରଶସ୍ତି, ଦେବ-ଦାସୀ ପ୍ରଥାର ନୃଶଂସ ଚିତ୍ର, ହିନ୍ଦୁ ସମାଜର ଦୁର୍ବଳ ଓ ଅସହାୟ ଅବସ୍ଥା, ହିନ୍ଦୁ-ମୁସଲମାନ ସମସ୍ୟା ରୂପ ପାଇଛି । ବିଂଶ ଶତାବ୍ଦୀରେ ୧୯୨୬ ମସିହାରେ ପ୍ରେମଚନ୍ଦ୍ର 'କାୟାକଳ୍ପ' ଉପନ୍ୟାସ ଲେଖିଥିଲେ । ଗୋବଧନିରାକରଣ, ହିନ୍ଦୁ-ମୁସଲମାନ ଏକତା ଏହାର ମୂଳାଧାର । ଊନବିଂଶ ଶତାବ୍ଦୀର ଉପନ୍ୟାସରେ କାଳ୍ପନିକତା ଅଧିକ ଥିଲା । କିନ୍ତୁ ପ୍ରେମଚନ୍ଦ୍ରଙ୍କର

ଲେଖାମାନରେ ଯଥାର୍ଥତା ରୂପ ପାଇଥିଲା । ମାନବହୃଦୟର ସାର୍ବଜନୀନ ସମବେଦନାକୁ ପ୍ରଥମେ ସେ ରୂପରେଖ ଦେଲେ । କେତେକ ଉପନ୍ୟାସରେ ଇଂରାଜୀ ସଭ୍ୟତା ଉପରେ ବ୍ୟଙ୍ଗ ବି କରାଯାଉଥିଲା । ଊନବିଂଶ ଶତାବ୍ଦୀରେ ବ୍ୟଙ୍ଗପ୍ରଧାନ ରଚନା ଆଦୌ ନ ଥିଲା । ଗୋପାଳରାମ ଗହମେରୀଙ୍କ 'ନୟେ ବାବୁ' (୧୮୯୬)ରେ ପ୍ରଥମେ ଏହିଭଳି ବ୍ୟଙ୍ଗାତ୍ମକ ରଚନା ପ୍ରବୃତ୍ତି ହେଲା । ବିଂଶ ଶତାବ୍ଦୀରେ ଏହି ଆଦି ଭାଗରେ ଉପନ୍ୟାସକାର ଗଣ ବିଦ୍ୟାର୍ଥୀର ଜୀବନଠାରୁ ଆରମ୍ଭ କରି ଦାମ୍ପତ୍ୟଜୀବନ, ବେଶ୍ୟାଜୀବନ, ଦରିଦ୍ରକୃଷୀର ଜୀବନ ଆଦି ସମସ୍ତ ସାମାଜିକ ସ୍ତରର ଚିତ୍ରଣ କରି ଯାଇଛନ୍ତି । ସମାଜ-ସୁଧାର ଏ ଯୁଗର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ସାମାଜିକ ଉଦ୍ଦେଶ୍ୟ ପ୍ରଧାନ ଉପନ୍ୟାସ ରଚନା କ୍ଷେତ୍ରରେ ପ୍ରେମଚନ୍ଦ୍ରଙ୍କର ସ୍ଥାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ବିଶାଳ । ତାଙ୍କ ସେବାସଦନ, କାୟାକଳ୍ପ, ନିର୍ମଳା, ପ୍ରତିଜ୍ଞା, ଗବନ ଆଦି ଲେଖା ସମସ୍ୟା ମୂଳକ । ନାରୀ ଜାତିପ୍ରତି ସମାଜରେ ପ୍ରବର୍ତ୍ତିତ ଥିବା ଅନୁଦାରତା, ସମ୍ମିଳିତ ପରିବାରପ୍ରଥା, ଅନ୍ଧବିଶ୍ୱାସ, ବିଧବାର ଜୀବନ, ମଧ୍ୟବିତ୍ତ ଶ୍ରେଣୀର ଭୂଷଣପ୍ରିୟତା ଓ ଆଡ଼ମ୍ବର ନିଷ୍ଠା ଆଦିର ବିଶଦ ବିବୃତ୍ତି ତାଙ୍କର ଉପନ୍ୟାସ ଭିତରେ ଜୀବନ୍ତ । ତାଙ୍କର ସାମାଜିକ ଉପନ୍ୟାସରେ ସେ କାଳର ସମସ୍ତ କୁପ୍ରଥାର ବିବୃତି ହୋଇଅଛି । ତାଙ୍କର ଏହି ଆଦର୍ଶୋନ୍ମୁଖୀ ଯଥାର୍ଥବାଦୀ ଧାରାର ପ୍ରଭାବ ପରବର୍ତ୍ତୀ ଔପନ୍ୟାସିକଙ୍କ ଉପରେ ପଡ଼ିଥିଲା । ୧୯୨୯ ମସିହାରେ ଲିଖିତ 'ମା' ଉପନ୍ୟାସ ଗୋଟିଏ ପ୍ରଧାନ ଉଦ୍ଦେଶ୍ୟପ୍ରଧାନ କୃତି । ମନୋବିଜ୍ଞାନର ବିଶ୍ଳେଷଣ ଦୃଷ୍ଟିରୁ ଏହା ପ୍ରଶଂସନୀୟ ।

ଏହି କାଳରେ ପ୍ରକୃତିବାଦୀ ( Naturalistic ) ଧାରାର ଉଦ୍‌ଭବ ଲକ୍ଷ୍ୟ କରାଯାଇପାରେ । ପ୍ରେମଚନ୍ଦ୍ରୋତ୍ତର କାଳରେ ସାମାଜିକ-ସମସ୍ୟା ଉପରେ ସୁଧାର-ବାଦୀ ଆବରଣକୁ କେତେକ ପସନ୍ଦ କଲେ ନାହିଁ । ସେମାନେ ମଣିଷର ବିକୃତ ଜୀବନର ଚିତ୍ର ଦେବାକୁ ଆରମ୍ଭ କଲେ । ସ୍ୱଚ୍ଛନ୍ଦ ପ୍ରେମବିଳାସ, ବେଶ୍ୟାଜୀବନ ଆଦିର ଅସଂଯତ ବର୍ଣ୍ଣନା ଦେଖା ଦେଲା । କଳା ଦୃଷ୍ଟିରୁ ଏଭଳି କୃତିଗୁଡ଼ିକର ମହତ୍ତ୍ୱପୂର୍ଣ୍ଣତା ଥିଲେ ହେଁ ଉଦ୍ଦେଶ୍ୟର ମହତ୍ତ୍ୱପୂର୍ଣ୍ଣତା ଏଥିରେ ନାହିଁ । ଋଷଭଚରଣଜୈନ, ଚତୁରସେନ ଶାସ୍ତ୍ରୀ ଓ ଉଗ୍ର ପ୍ରକୃତ-ବାଦୀଧାରାର ପ୍ରମୁଖ କଳାକାର ।

ଉପନ୍ୟାସ ରଚନା କ୍ଷେତ୍ରରେ ଜୈନେନ୍ଦ୍ର ଓ ଜୟଶଙ୍କରପ୍ରସାଦ-ଙ୍କର ଯୋଗଦାନ ଏ ଯୁଗର ପ୍ରଧାନ ଘଟଣା । କଙ୍କାଳ (୧୯୨୯), ତିତଲି (୧୯୩୪) ଉପନ୍ୟାସ ପ୍ରସାଦଙ୍କର ମହତ୍ତ୍ୱପୂର୍ଣ୍ଣ ରଚନା । ଭାଷା, ଶୈଳୀ, କଳା, ବ୍ୟକ୍ତିତ୍ୱ ତଥା ସଂସ୍କାରମୂଳକ ଭାବ-ଭାବନା ଦୃଷ୍ଟିରୁ ଉପରୋକ୍ତ ରଚନା ପ୍ରଶଂସନୀୟ । ଜୈନେନ୍ଦ୍ରଙ୍କର ପରଖ, ସୁନୀତା, ତ୍ୟାଗପତ୍ର ରେ ହିନ୍ଦୁନାରୀର ବେଦନାସିକ୍ତ, କାରୁଣ୍ୟଭରା, ଅନାଶ୍ରିତ ପରିସ୍ଥିତି ଚିତ୍ରିତ । ମନୋବୈଜ୍ଞାନିକ ଓ କଳାତ୍ମକ ଭିତ୍ତି ଉପରେ ସେ ନାରୀଜାତି ପ୍ରତି ସହାନୁଭୂତି ମୂଳକ ଚିତ୍ର ପ୍ରଦାନ କରିଛନ୍ତି । ସିୟାରାମ ଶରଣଙ୍କର 'ନାରୀ', ଗୋବିନ୍ଦବଲ୍ଲଭ ପନ୍ତଙ୍କର ଦୁନିଆ, ରାଧିକାରମଣ ପ୍ରସାଦ ସିଂହଙ୍କର, 'ପୁରୁଷ ଓ ନାରୀ', ଭଗବତୀ ପ୍ରସାଦଙ୍କର 'ଦୋ ବହନେ' ଏହି ଧାରାର ରଚନା ।

ରସ ପ୍ରଧାନ ଉପନ୍ୟାସରେ କଳାତ୍ମକ ପ୍ରଣୟ କାହାଣୀ ପ୍ରଦତ୍ତ ହୋଇଅଛି । ୧୮୮୮ମସିହାରେ ସଂସ୍କୃତ କାଦମ୍ବରୀ ଶୈଳୀରେ ଜଗମୋହନ ସିଂହଙ୍କର ରଚିତ 'ଶ୍ୟାମାସ୍ୱପ୍ନ' ଏ ଶ୍ରେଣୀର ପ୍ରଥମ କୃତି । ପରେ କିଶୋରୀଲାଲ ଗୋସ୍ୱାମୀ ପ୍ରେମ-

ପ୍ରେମାନ୍‌ସକୁ ଭିତ୍ତି କରି କେତକ ଉପନ୍ୟାସ ଲେଖିଲେ । ପ୍ରେମର ଉଦାତ୍ତଭାବ, ମନୋବୈଜ୍ଞାନିକ ଦୃଷ୍ଟିକୋଣ ଓ ଚରିତ୍ର-ଚିତ୍ରଣର ମହତ୍ତ୍ୱପୂର୍ଣ୍ଣତା ଏ ସବୁରେ ନଥିଲା । ଚତୁରସେନ ଶାସ୍ତ୍ରୀ, ବେଚନଶର୍ମା ଉଗ୍ର, ସୂର୍ଯ୍ୟକାନ୍ତ ତ୍ରିପାଠୀ ନିରାଲା, ହୃଦୟେଶ, ଗୋବିନ୍ଦ ବଲ୍ଲଭ ପନ୍ତ ଓ ବୃନ୍ଦାବନ ଲାଲ ବର୍ମା ଏଭଳି ରଚନାମାନ କରିଛନ୍ତି ।

ବସ୍ତୁପ୍ରଧାନ ଉପନ୍ୟାସ ଗୁଡ଼ିକରେ ଘଟଣାର ପ୍ରାଧାନ୍ୟ ଥାଏ । ମନୋରଞ୍ଜନ ଏଭଳି ଲେଖାର ମୁଖ୍ୟ ଉଦ୍ଦେଶ୍ୟ । ଗୋପାଳ ଗହମେରୀଙ୍କର 'ଚତୁର ଚଞ୍ଚଳା' (୧୮୯୩), ଭାନୁମତୀ (୧୮୯୪), ପ୍ରେମା (୧୮୯୪) ଏହି ଧାରାର ପ୍ରଥମ ସୃଷ୍ଟି । କିଶୋରୀଲାଲ ଗୋସ୍ୱାମୀଙ୍କର 'ପୁନର୍ଜନ୍ମ' (୧୯୦୭) ଏହି ଶ୍ରେଣୀର ରଚନା । ଏ ସବୁରେ ସାମାଜିକ ଜୀବନର ନାନା ବିଷୟ ରୂପ ପାଇଅଛି । ଗାର୍ହସ୍ଥ୍ୟ ଜୀବନ, ପାରିବାରିକ କଳହ, ସତୀତ୍ୱବାଦ, ଦାମ୍ପତ୍ୟ-ଜୀବନ ଆଦିର ବର୍ଣ୍ଣନା ମଧ୍ୟ କେତେକ ଉପନ୍ୟାସରେ ଦେଖାଯାଏ । ରାମ ସିଂହଙ୍କର 'ବନବିହଙ୍ଗିନୀ', ରାଧିକାରମଣଙ୍କର 'ତରଙ୍ଗ', ରାହୁଲ ସାଂକୃତ୍ୟାୟନଙ୍କର 'ବାଇଶି ଶତାବ୍ଦୀ', ଶିବନାଥଙ୍କର 'ମଝଲୀ ବହୁ' ଓ ଶମ୍ଭୁଦୟାଲଙ୍କର 'ବହୁରାନୀ' ବିଂଶଶତାବ୍ଦୀରେ ବସ୍ତୁପ୍ରଧାନ ଉପନ୍ୟାସ ମଧ୍ୟରେ ଶ୍ରେଷ୍ଠ ।

ଚରିତ୍ରପ୍ରଧାନ ଉପନ୍ୟାସରେ ଚରିତ୍ର ଚିତ୍ରଣକୁ ପ୍ରଧାନ ସ୍ଥାନ ଦିଆଯାଏ । ଊନବିଂଶ ଶତାବ୍ଦୀରୁ ଏପରି ଲେଖା ଆରମ୍ଭ ହୋଇଛି । ଜଗମୋହନଙ୍କର 'ଶ୍ୟାମାସ୍ୱପ୍ନ', ଅଯୋଧ୍ୟା ସିଂହଙ୍କର 'ଠେଠ୍ ହିନ୍ଦୀକା ଠାଟ୍' ଆଦି ଲେଖା ଊନବିଂଶ ଶତାବ୍ଦୀର ରଚନା । ପ୍ରେମଚନ୍ଦ୍ରଙ୍କର ଅଳ୍ପ ପୂର୍ବରୁ ବ୍ରଜନନ୍ଦନ ସହାୟ, ନବଲରାମ ଆଦି ଚରିତ୍ର ଉପରେ ପ୍ରାଧାନ୍ୟ ଦେଇ ଲେଖୁଥିଲେ । ପ୍ରେମଚନ୍ଦ୍ରଙ୍କର ଲେଖନୀ ଚରିତ୍ର-ପ୍ରଧାନ ଉପନ୍ୟାସ କ୍ଷେତ୍ରରେ

ନୂତନ ଜାଗରଣ ଆଣିଦେଲା । ରଙ୍ଗଭୂମି, ପ୍ରେମାଶ୍ରମ, ଗବନ ପାଠକଲେ ଏହା ସ୍ପଷ୍ଟ ହୁଏ । ଚରିତ୍ରର ମନୋବୈଜ୍ଞାନିକ ବିଶ୍ଳେଷଣ ଏ ଯୁଗରେ ହେଉଅଛି । ପ୍ରେମଚନ୍ଦ୍ରଙ୍କ ପରଠାରୁ ଏଭଳି ଚରିତ୍ରଚିତ୍ରଣ ବିଶେଷ ଭାବରେ ଦେଖାଯାଏ । ଜୈନେନ୍ଦ୍ରଙ୍କର 'ତପୋଭୂମି' ଓ 'ସୁନୀତା' ମନୋବିଜ୍ଞାନ-ମୂଳକ ଅଟେ । ବର୍ତ୍ତମାନ ଯୁଗରେ ଇଲଚନ୍ଦ୍ର ଯୋଶୀଙ୍କର 'ସନ୍ନ୍ୟାସୀ' 'ପର୍ଦ୍ଦେକୀ ରାଣୀ', ଅଜ୍ଞେୟଙ୍କର ଶେଖର ଏକଜୀବନୀ ଏହି ଧାରା ବିପ୍ଳବକାରୀ ରଚନା ।

ରାଷ୍ଟ୍ରୀୟ ପ୍ରେରଣାମୂଳକ ଉପନ୍ୟାସର ସୃଷ୍ଟି ଏହି ବିଂଶ ଶତାବ୍ଦୀ-ଠାରୁ ହିଁ ହୋଇଛି । ଫଳସ୍ୱରୂପ ପାଠକଙ୍କର ୧୯୨୫ ମସୀହାରେ ରଚିତ 'ଭାରତମାତା' ପ୍ରଥମ ଦେଶ ପ୍ରେମମୂଳକ ଉପନ୍ୟାସ । ରାଷ୍ଟ୍ରୀୟତାର ବ୍ୟାପକ ପରିଚୟ ପ୍ରେମଚନ୍ଦ୍ରଙ୍କର 'ପ୍ରେମାଶ୍ରମ'ରୁ ମିଳେ । ତାଙ୍କର 'ରଙ୍ଗଭୂମୀ', 'କାୟାକଳ୍ପ', 'କର୍ମଭୂମୀ', 'ଗୋଦାନ'ରେ ଦେଶଭକ୍ତି ଉପଜୀବ୍ୟ । ତାଙ୍କପରେ ୧୯୪୦ରେ ରଚିତ 'ଦାଦା କମରେଡ଼', 'ମହାକାଳ', 'ଟେଢ଼ ମେଢ଼୍ ରାସ୍ତେ' ଏ ଧାରାର ବାହକ ।

ଐତିହାସିକ-ଉପନ୍ୟାସ ହିନ୍ଦୀରେ ବହୁତ ଲେଖାଯାଇଛି । ପ୍ରାରମ୍ଭିକ ଐତିହାସିକ ଉପନ୍ୟାସରେ ପ୍ରେମ ପରିକଳ୍ପନା (Romance) ବେଶୀ ଭାବରେ ଦେଖାଯାଏ । ବିଶୁଦ୍ଧ ଐତିହାସିକ-ତାର ଅଭାବ ମଧ୍ୟ ପ୍ରଥମେ ରହିଥିଲା । ଭାରତେନ୍ଦୁଙ୍କର 'ନୀଳଦେବୀ' ନାଟକରୁ ଏ ଶ୍ରେଣୀର ରଚନା ପାଇଁ ପ୍ରେରଣା ୧୮୮୨ ମସିହା-ଠାରୁ ମିଳିଛି । ସେ କାଳରେ କିଶୋରୀଲାଲ ହିଁ ଏହିଭଳି ଉପନ୍ୟାସ ଲେଖା ଆରମ୍ଭ କଲେ । ପ୍ରେମଚନ୍ଦ୍ରଙ୍କର ଅବ୍ୟବହିତ ପୂର୍ବରୁ ଗଙ୍ଗାପ୍ରସାଦ ଗୁପ୍ତ, ବଳଦେବ ପ୍ରସାଦ ମିଶ୍ର, ଶ୍ୟାମସୁନ୍ଦର ବୈଦ୍ୟ, ଦୁର୍ଗା ପ୍ରସାଦ କ୍ଷତ୍ରୀ ଐତିହାସିକ-ଉପନ୍ୟାସ ଲେଖିଥିଲେ । ତେବେ

୧୯୩୦ ମସୀହା ପରେ ବଶିଷ୍ଟତା ଦେଖାଦେଲା । ବୃନ୍ଦାବନ-ଲାଲ ବର୍ମାଙ୍କର ଗଡ଼କୁଣ୍ଡାର (୧୯୩୪), ବିରାଟା କୀ ପଦ୍ମିନୀ (୧୯୩୬), ଝାନସୀ କୀ ରାଣୀ (୧୯୪୬), ମୃଗନୟନୀ (୧୯୪୯) ବିଶୁଦ୍ଧ ଐତିହାସିକ ଉପନ୍ୟାସ । ଭଗବତୀଚରଣ ବର୍ମା, ଜୟଶଙ୍କର ପ୍ରସାଦ ମଧ୍ୟ ଐତିହାସିକ ରଚନାରେ ହାତ ଦେଇଥିଲେ ।

ଯାଦୁଗରୀ ଓ ଐନ୍ଦ୍ରଜାଲିକ ବର୍ଣ୍ଣନା ମୂଳକଲେଖା ହିନ୍ଦୀରେ ବହୁଳ ଭାବରେ ଦେଖାଯାଏ । ପ୍ରଥମେ ଉର୍ଦ୍ଦୁ ଉପନ୍ୟାସରୁ ଏହି ପ୍ରେରଣା ମିଳିଥିଲା । ଦେବକୀନନ୍ଦନ କ୍ଷତ୍ରୀଙ୍କର ୧୮୯୨ରେ ରଚିତ 'ଚନ୍ଦ୍ରକାନ୍ତା' ଏହି ଧାରାର ପ୍ରଥମ ରଚନା । 'ଚନ୍ଦ୍ରକାନ୍ତା ସନ୍ତତି', 'ଭୂତନାଥ', କ୍ରମେ ପ୍ରକାଶ ପାଇଥିଲା । ଅତି ପ୍ରାକୃତ ବର୍ଣ୍ଣନା, ଅବାସ୍ତବ ଚିତ୍ର, କୁତ୍ସିତ ପ୍ରେମ ବର୍ଣ୍ଣନାରେ ଏହି ଉପନ୍ୟାସ ସବୁ ପରିପୂର୍ଣ୍ଣ । ଜାସୂସୀ ବା ଡିଟେକ୍‌ଟିଭ ଉପନ୍ୟାସର ଧାରା ପ୍ରେମ-ଚନ୍ଦ୍ରୋତ୍ତର କାଳରେ ଗୋପାଳଚନ୍ଦ୍ର ଗହମେରୀଙ୍କଠାରୁ ଆରମ୍ଭ ହୋଇଛି ବୋଲି ଜଣାଯାଏ । ଇଂରାଜୀ ସାହସିକ-ଘଟଣା ମୂଳକ ଲେଖା ଏହି ଧାରାର ମୂଳପ୍ରେରକ ଶକ୍ତି । ଦେବକୀନନ୍ଦନଙ୍କର ଐୟାରୀ ଓ ତିଳସ୍ମୀ ଉପନ୍ୟାସ ଓ ଗୋପାଳଚନ୍ଦ୍ରଙ୍କର ଜାସୂସୀ ଉପନ୍ୟାସରେ କଳାର ମହନୀୟତା ରହିଛି । ଐୟାରୀ ଓ ତିଳସ୍ମୀ ଧାରାର ଲେଖା ହିନ୍ଦୀ ଉପନ୍ୟାସର ଆଦ୍ୟ ସ୍ତର । ପରେ ଉପନ୍ୟାସର ଅନ୍ୟାନ୍ୟ ଧାରା ଆସିଅଛି । ବୈଜ୍ଞାନିକ-ଉପନ୍ୟାସର ଅଭାବ ହିନ୍ଦୀରେ ରହିଛି । ୧୯୫୩ ମସୀହାରେ ଡକ୍‌ଟର ସମ୍ପୂର୍ଣ୍ଣାନନ୍ଦ ଏହି ଧାରାରେ 'ପୃଥିବୀ ସେ ସପ୍ତର୍ଷିମଣ୍ଡଳ' ନାମକ ଉପନ୍ୟାସ ଲେଖିଥିବାର ଜଣାଯାଏ ।

ଏବେ ସୂରଜ କା ସାତବାଁ ଘୋଡ଼ା, ମୈଲା ଆଞ୍ଚଲ, ନଦୀ କେ ଦ୍ୱୀପ ଆଦି ଯେଉଁ ଉପନ୍ୟାସ ପ୍ରକାଶ ପାଇଛି—ତାହା ହିନ୍ଦୀ-

ସାହିତ୍ୟ କ୍ଷେତ୍ରରେ ଚିନ୍ତାର ବିଷୟ ହୋଇଛି । ଅତ୍ୟଧିକ ଭାବରେ ଯୌନଚର୍ଚ୍ଚା ଏ ଗୁଡ଼ିକରେ ହୋଇଛି । ସମାଜ, ଶ୍ଳୀଳତା, ରୁଚିର ମସ୍ତକ ଚର୍ବଣ କରି ଯେଉଁ ଯୌନ-ବିଳାସ ଏଥିରେ ପରିଲକ୍ଷିତ ହୁଏ ତାହାର ପରିଣାମ ସମାଜରେ ଭୟାବହ । ଅତି-ଯଥାର୍ଥବାଦ, ପ୍ରକୃତବାଦ ବା ଯୌନ-ତତ୍ତ୍ୱର ଦୋହାଇଦେଇ ସମାଜରେ ସାହିତ୍ୟ-ରାଜ୍ୟରେ କଳଙ୍କ, ବ୍ୟଭିଚାରର ପ୍ରଚାର କରିବା କେତେଦୂର ସମୀଚୀନ ତାହା ଚିନ୍ତାର ବିଷୟ । ମଣିଷ କେବଳ କାମ-କେନ୍ଦ୍ରିକ, ଯୌନ-ପ୍ରଧାନ ହୋଇ ନପାରେ । ତାହାର ଚିତ୍ରଣରେ ଶୁଭସ୍ପୃହା, ନରର ରୂପାୟନରେ ଉତ୍କଟ ଅଶ୍ଳୀଳତା ପ୍ରଦର୍ଶନ ଯେପରି ଅବାସ୍ତବ, ସେପରି ଅହିତକାରୀ ।

———

( ୪ମ )

# ହିନ୍ଦୀ ଗଳ୍ପର ସୃଷ୍ଟି ଓ ପ୍ରଗତି

ଗଳ୍ପ ଗଦ୍ୟ-ସାହିତ୍ୟର ଏକ ପ୍ରମୁଖ ଦିଗ । ଉପନ୍ୟାସ ପରି ଗଳ୍ପର ଇତିହାସ ବେଶୀଦିନର ନୁହେଁ । ଏହା ମଧ୍ୟ ଭାରତୀୟ ସାହିତ୍ୟକୁ ପାଶ୍ଚାତ୍ୟର ଦାନ । ତେବେ ଏହା ସତ୍ୟ ଯେ ଭାରତରେ କାହାଣୀର ଦୃଢ଼ ପରମ୍ପରା ରହିଥିଲା । ହିନ୍ଦୀଭାଷୀ ଅଞ୍ଚଳରେ ନାନା ଲୋକକଥା ବି ପ୍ରଚଳିତ ଥିଲା । ବଙ୍ଗୀୟ କଥା-ସାହିତ୍ୟର ଚର୍ଚ୍ଚା ଓ ପାଶ୍ଚାତ୍ୟ ପ୍ରଭାବରେ ଆଧୁନିକ ଗଳ୍ପ ପତ୍ର-ପତ୍ରିକା ମାଧ୍ୟମରେ ହିନ୍ଦୀରେ ବିକଶିତ ହୋଇଛି କହିଲେ— ଅସମୀଚୀନ ହେବନାହିଁ ।

ହିନ୍ଦୀ ଗଳ୍ପର ବିସ୍ତାରରେ ଊନବିଂଶ ଶତାବ୍ଦୀଠାରୁ ପ୍ରାୟ ୧୯୧୬ ମସିହା ପର୍ଯ୍ୟନ୍ତ ଅର୍ଥାତ୍ କଥା ସମ୍ରାଟ ପ୍ରେମଚନ୍ଦ୍ରଙ୍କର ଆବିର୍ଭାବ କାଳକୁ ପ୍ରଥମ ଚରଣ ବୋଲି କୁହାଯାଏ । ଊନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ଯେଉଁ ଗଳ୍ପ ଦେଖାଯାଏ ସେଥିରେ ମୌଳିକତା ନାହିଁ । 'ନାସିକେତୋପାଖ୍ୟାନ' ବା 'ପ୍ରେମସାଗର' କୃଷ୍ଣ-ସମ୍ବନ୍ଧୀୟ କାହାଣୀ ଅଟେ । ପୌରାଣିକ ତଥା କାବ୍ୟପରମ୍ପରା ଏଥିରେ ଉଜ୍ଜୀବିତ । 'ରାନୀ କେତେକୀ କୀ କହାନୀ'କୁ ଗଳ୍ପ କୁହାଯାଇ ପାରେ । କିନ୍ତୁ ତାହା ବି କଳା-ଦୃଷ୍ଟିରୁ ଆଧୁନିକ-ଗଳ୍ପ ପଦବାଚ୍ୟ ନୁହେଁ । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଭାରତେନ୍ଦୁ-ଯୁଗ ନାମରେ ଖ୍ୟାତ । ଏ କାଳରେ ଅବଶ୍ୟ ଯଥାର୍ଥ ରୂପରେ କାହାଣୀ-କଳା ଦେଖାଯାଇ ନଥିଲା । ତେବେ ପରିବର୍ତ୍ତନ ଯେ

ଆସିଥିଲା, ଏହା ସତ୍ୟ । ରାଧାଚରଣ ଗୋସ୍ୱାମୀଙ୍କର 'ଯମଲୋକ କୀ ଯାତ୍ରା', ଭାରତେନ୍ଦୁଙ୍କର 'ଏକ ଅଦ୍ଭୁତ ଅପୂର୍ବ ସ୍ୱପ୍ନ', 'ଚୂହା ପୈଗମ୍ବର' ଆଦି ଗଳ୍ପରେ କଥା ବସ୍ତୁର ନବୀନ ଧାରା ଦେଖିବାକୁ ମିଳେ । ପୁରୁଣା ଉପଦେଶାତ୍ମକତା ତଥା ଗମ୍ଭୀର ବାତାବରଣ ଗଳ୍ପରାଜ୍ୟରୁ ଦୂର ହୋଇ, ଏକ ସ୍ୱଚ୍ଛ ବ୍ୟଙ୍ଗାତ୍ମକ ଶୈଳୀ ଏ ଯୁଗରେ ଗଢ଼ି ଉଠୁଥିଲା ।

ଭାରତେନ୍ଦୁ-ଯୁଗ ଓ ଦ୍ୱିବେଦୀ ଯୁଗର ସନ୍ଧିକାଳରେ ହିନ୍ଦୀ-ସାହିତ୍ୟ କ୍ଷେତ୍ରରେ ବାହ୍ୟପ୍ରଭାବ ପ୍ରବଳ ଥିଲା । ବଙ୍ଗଳାଭାଷାର ମାଧ୍ୟମରେ ନୂଆ ନୂଆ ଶୈଳୀ ହିନ୍ଦୀର ପ୍ରତ୍ୟେକ କ୍ଷେତ୍ରରେ ବ୍ୟବହୃତ ହେଉଥିଲା । ହିନ୍ଦୀ-ଗଳ୍ପ ଏହାର ପ୍ରଭାବରେ ବିକଶିତ ହୋଇଥିଲା ଏବଂ ବଙ୍ଗଳାର ଅନୁକରଣ ପ୍ରବଳ ହୋଇ ଉଠିଥିଲା । କିଶୋରୀଲାଲ ଗୋସ୍ୱାମୀ, ମାଷ୍ଟର ଭଗବାନ ଦାସ, ଗିରିଜାଦତ୍ତ ବାଜପେୟୀ ଆଦି ଲେଖକଗଣ ମୌଳିକ ରଚନାରେ ହାତ ଦେଇଥିଲେ । ଅନ୍ୟପକ୍ଷରେ ଗିରିଜାକୁମାର ଘୋଷ ଆଦି ଅନୁବାଦ କରିବାରେ ଲାଗିଥିଲେ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରବୀନ୍ଦ୍ରନାଥଙ୍କର ଗଳ୍ପ ହିନ୍ଦୀ ପତ୍ର ପତ୍ରିକାରେ ଅନୂଦିତ ହେଉଥିଲା । ତାଙ୍କର ଭାବୁକତା, ରହସ୍ୟାତ୍ମକତା ତଥା ଶୈଳୀର ଅନୁକରଣ ହିନ୍ଦୀ-ଗଳ୍ପରେ ଅବଶ୍ୟମ୍ଭାବୀ ହୋଇ ଉଠିଥିଲା । 'ସରସ୍ୱତୀ' ଓ 'ସୁଦର୍ଶନ' ମାସିକ ପତ୍ରିକାରେ କାହାଣୀ ପ୍ରକାଶ ପାଉଥିଲା । ପଣ୍ଡିତ ମାଧବ ପ୍ରସାଦ ମିଶ୍ରଙ୍କର ସାତଗୋଟି ଗଳ୍ପ ଏଥିରେ ପ୍ରକାଶିତ ହୋଇଥିଲା । ଦୟାର ମହତ୍ତ୍ୱ, ବିଶ୍ୱାସର ଫଳ, ସତ୍ୟର ମହତ୍ତ୍ୱ, ପିତୃଭକ୍ତି, ବାଳିକାର ସାହସ ଏଗୁଡ଼ିକରେ ମୁଖ୍ୟ ପ୍ରତିପାଦ୍ୟ ବିଷୟ । 'ସରସ୍ୱତୀ'ରେ ପ୍ରକାଶିତ ଗଳ୍ପଗୁଡ଼ିକରେ ମନୋରଞ୍ଜନ ତଥା

ଶୈଳୀ ପ୍ରତି ଦୃଷ୍ଟି ଦିଆ ଯାଉଥିଲା । ଏହି ସବୁ ଗଳ୍ପରୁ ନୂତନ ପ୍ରୟୋଗର ସୂଚନା ମିଳଲା ।

ଦ୍ୱିବେଦୀ ଯୁଗରେ 'ଇନ୍ଦୁ' ପତ୍ରିକା ଗଳ୍ପର ବିକାଶରେ ଖୁବ୍ ସାହାଯ୍ୟ କରିଥିଲା । ୧୯୧୧ ମସିହାରେ ବାବୁ ଜୟଶଙ୍କର ପ୍ରସାଦଙ୍କର 'ଗ୍ରାମ' ନାମକ ଗଳ୍ପ ଏଥିରେ ପ୍ରକାଶ ପାଇଥିଲା । ଏହା ପୂର୍ବରୁ ୧୯୦୭ ମସିହାରେ 'ସରସ୍ୱତୀ'ରେ ତାଙ୍କର 'ଦୁଲାଇବାଲୀ' ନାମକ ଗଳ୍ପ ପ୍ରକାଶିତ ହୋଇଥିଲା । ପରେ ତାଙ୍କର 'ରସାଧାର' ଗଳ୍ପ ଦେଖାଦେଲା । ଯଦ୍ୟପି ଏଗୁଡ଼ିକରେ ସଂସ୍କୃତ ଓ ବଙ୍ଗଳାର ପ୍ରଭାବ ରହିଥିଲା, ତଥାପି ନୂତନ ଶକ୍ତିର ସୂଚନାର ଅଭାବ ନଥିଲା । ଏକ ଅଭିନବ ଭାବୁକତା ତାଙ୍କର କୃତିରେ ଦେଖାଯାଏ । ତତ୍‌କାଳୀନ ଅନ୍ୟ ଲେଖକଙ୍କଠାରେ ଏପରି ଅତି-ଭାବୁକତା ନଥିଲା । ଶ୍ରୀ ରାଧିକାରମଣପ୍ରସାଦ ସିଂହ, ଜ୍ୱାଳାଦତ୍ତ ଶର୍ମା, କୌଶିକ ଓ ଚନ୍ଦ୍ରଧର ଶର୍ମା ଗୁଲେରି ମୌଳିକ ଗଳ୍ପ ଏ କାଳରେ ସୃଷ୍ଟି କରିଥିଲେ । ରସାନୁସିକ୍ତତା ସେମାନଙ୍କର କୃତିର ବୈଶିଷ୍ଟ୍ୟ ପ୍ରତିପାଦନ କରେ । 'ଗ୍ରାମ' ଓ 'ଦୁଲାଇବାଲୀ' ଗଳ୍ପରେ ପ୍ରସାଦଙ୍କର ଯଥାର୍ଥବାଦୀ ଶୈଳୀର ପରିଚୟ ମିଳେ । ତାଙ୍କର ଗଳ୍ପରେ ମୁଖ୍ୟତଃ ପ୍ରେମ-ରୋମାନ୍ସ, ଇତିହାସ, ଯଥାର୍ଥ-ଜୀବନର କାବ୍ୟାତ୍ମକ ବାତାବରଣ-ପ୍ରଧାନ ରୂପାୟନ ସମ୍ଭବ ହୋଇଛି । ତାଙ୍କର 'ଇନ୍ଦ୍ରଜାଲ' ଓ 'ଛାୟା' ନାମକ ଗଳ୍ପ-ସଂଗ୍ରହରୁ ଏହା ସ୍ପଷ୍ଟ ପ୍ରମାଣିତ ହୋଇଯାଏ ।

୧୯୧୬ ମସିହାଠାରୁ ଗଳ୍ପ-କ୍ଷେତ୍ରରେ ପ୍ରେମଚନ୍ଦ୍ରଙ୍କର ଆବିର୍ଭାବ ହୁଏ । ଏହା ହିନ୍ଦୀ-ଗଳ୍ପ ଧାରାର ଦ୍ୱିତୀୟ ଚରଣ । 'ସରସ୍ୱତୀ' ପତ୍ରିକାରେ ତାଙ୍କର 'ପଞ୍ଚ ପରମେଶ୍ୱର' ଗଳ୍ପ ପ୍ରକାଶ ପାଇଥିଲା । ତାଙ୍କର ଗଳ୍ପ-କଳାରେ ଟଲଷ୍ଟୟ ଓ ରବୀନ୍ଦ୍ରଙ୍କର

ଶୈଳୀର ସମନ୍ୱୟ ଲକ୍ଷିତ ହେଲା । ତାହାଙ୍କ ଲେଖାମାନଙ୍କରେ ଚରିତ୍ର-ଚିତ୍ରଣ ପ୍ରଥମେ ସ୍ଥାନ ପାଇଲା । ଏ କାଳର ଗଳ୍ପରେ ମଧ୍ୟବିତ୍ତ ଶ୍ରେଣୀ, ରାଷ୍ଟ୍ରୀୟ ଆନ୍ଦୋଳନ ଓ ପଲ୍ଲୀଜୀବନ ପ୍ରଧାନ ଆଧାର । ଯଥାର୍ଥ ଓ ଆଦର୍ଶର ସମନ୍ୱୟରେ ପ୍ରେମଚନ୍ଦ୍ରଙ୍କର ଲେଖା ସଫଳ ହୋଇପାରିଛି । ଜୀବନର ସମ୍ପୂର୍ଣ୍ଣ ବା ଖଣ୍ଡଚିତ୍ର ସେ ଗଳ୍ପରେ ଦେଉଥିଲେ । ୧୯୩୬ ମସିହା ପର୍ଯ୍ୟନ୍ତ ବାବୁ ଜୟଶଙ୍କର ପ୍ରସାଦ ଓ ପ୍ରେମଚନ୍ଦ୍ର ପ୍ରଧାନ ଗଳ୍ପକାର ରୂପେ ଖ୍ୟାତି ଲାଭ କରିଥିଲେ । ପ୍ରେମଚନ୍ଦ୍ରଙ୍କର ଗଳ୍ପ ଉଦ୍ଦେଶ୍ୟ ପ୍ରଧାନ । ମନ-ବିଶ୍ଳେଷଣ ବା ଅନ୍ତର୍ଗତ ଦ୍ୱନ୍ଦ୍ୱର ଚିତ୍ର ସେଥିରେ ବ୍ୟାପକ ନୁହେଁ ।

୧୯୨୮ ମସିହା ବେଳକୁ ଅନ୍ୟ ଏକ ଦଳ ନୂତନ କଳାକାର ଦେଖା ଦେଇଥିଲେ । ସେମାନେ ପ୍ରେମଚନ୍ଦ୍ରଙ୍କର ଆଦର୍ଶୋନ୍ମୁଖୀ ଯଥାର୍ଥବାଦକୁ ଗ୍ରହଣ କଲେନାହିଁ । ସେମାନେ ପୂର୍ଣ୍ଣଭାବରେ ଯଥାର୍ଥବାଦୀ । (Realistic) ବା ସ୍ୱଚ୍ଛନ୍ଦତାବାଦୀ ହୋଇପଡ଼ିଥିବାର ଜଣାଯାଏ । ପାଣ୍ଡେୟ ବେଚନ ଶର୍ମା ଉଗ୍ର, ଋଷଭଚରଣ ଜୈନ, ଚତୁରସେନ ଶାସ୍ତ୍ରୀ ଯଥାର୍ଥବାଦୀମାନଙ୍କ ମଧ୍ୟରେ ପ୍ରଧାନ । ଏମାନଙ୍କର ଭାବଧାରା ଆହୁରି ଅନେକଙ୍କୁ ନୂତନ ମାର୍ଗର ସନ୍ଧାନ ଦେଇଥିଲା । ପ୍ରତ୍ୟେକ ବସ୍ତୁର ନଗ୍ନ ଓ ବାସ୍ତବ ଚିତ୍ରଣ ଏଭଳି ଗଳ୍ପରେ ହେଉଥିଲା । ଭଗବତୀଚରଣ ବର୍ମା, ନିରାଲା ଓ ସୁମିତ୍ରାନନ୍ଦନ ଆଦି ଅନ୍ୟ ଦଳଭୁକ୍ତ ହୋଇ ପଡ଼ିଥିଲେ । ଏମାନେ ସ୍ୱଚ୍ଛନ୍ଦତାବାଦୀ ବା ଛାୟାବାଦୀ କଳାକାର । ଏମାନଙ୍କର ଲେଖାରେ ପ୍ରେମ ପ୍ରଧାନ । ସ୍ତ୍ରୀ ଚରିତ୍ର ଚିତ୍ରଣରେ ଭାବୁକତା ଓ ବଦାନ୍ୟତା ଛାୟାବାଦୀ ଗଳ୍ପକାରମାନେ ଦେଖାଇ-ଛନ୍ତି । ସେମାନଙ୍କର ଗଳ୍ପ କବିତ୍ୱମୟ । ଉପରୋକ୍ତ ଦୁଇଶ୍ରେଣୀ କଳାକାରଙ୍କଠାରୁ ସ୍ୱତନ୍ତ୍ର ଭାବଭାବନା ଦେଇ ଯେଉଁ ତୃତୀୟ-

ଦଳ ଦେଖାଗଲେ, ସେମାନଙ୍କ ମଧ୍ୟରେ ଜୈନେନ୍ଦ୍ର ଓ ଅଜ୍ଞେୟ ପ୍ରଧାନ । ଜୈନେନ୍ଦ୍ର ପ୍ରଥମେ ଗଳ୍ପ-କ୍ଷେତ୍ରରେ ପ୍ରବେଶ କରି ଭାଷାଶୈଳୀର ନବୀନ ପ୍ରୟୋଗ ପ୍ରଦର୍ଶନ କରିଥିଲେ । ମଧ୍ୟବିତ୍ତ ଜୀବନର ନାନା ଅସଙ୍ଗତିକୁ ସେ ଗଳ୍ପର ଆଧାର ରୂପେ ଗ୍ରହଣ କରିଛନ୍ତି । ତାଙ୍କର ଭାଷାଶୈଳୀରେ ରବୀନ୍ଦ୍ରନାଥଙ୍କର ପ୍ରଭାବ ପରିଦୃଷ୍ଟ ହୁଏ ସତ୍ୟ, ତଥାପି ସେ ପ୍ରେମଚନ୍ଦ୍ରଙ୍କର ଯଥାର୍ଥ-ବାଦୀ ଭଙ୍ଗୀକୁ ଗ୍ରହଣ କରିଛନ୍ତି । ଅଜ୍ଞେୟଙ୍କର ଲିଖିତ 'ପଗୋଡ଼ା ବୃକ୍ଷ' ଗଳ୍ପ ଏକ ବିଶେଷ ରଚନା । ଉପଦେଶାତ୍ମକତା ବା ଜୀବନ ପ୍ରତି ସନ୍ଦେଶଦେବା ପ୍ରଥା ଏଥିରେ ନାହିଁ । ଜୀବନର ଖଣ୍ଡଚିତ୍ର ଅଜ୍ଞେୟ ଦେଇଛନ୍ତି । ମାନସିକ ଦ୍ୱନ୍ଦ୍ୱ, ମଣିଷ-ମଣିଷଭିତରେ ଥିବା ଦ୍ୱନ୍ଦ୍ୱ, ବିଭିନ୍ନ ଘଟଣାର ଘାତପ୍ରତିଘାତ ସେ ଗଳ୍ପରେ ରୂପାୟନ କରିଥିଲେ । ପ୍ରେମଚନ୍ଦ୍ରଙ୍କ ପରି ତାଙ୍କ ଗଳ୍ପରେ ଜୀବନ-ଦର୍ଶନ ( Philosophy of life) ନଥିଲା । ବ୍ୟକ୍ତି-ପ୍ରଧାନ ଶୈଳୀ ଅଜ୍ଞେୟଙ୍କର ବିଶିଷ୍ଟତା ପ୍ରଦର୍ଶନ କରେ । ଅଜ୍ଞେୟ ଓ ଜୈନେନ୍ଦ୍ର, ପ୍ରେମଚନ୍ଦ୍ରଙ୍କର ସୁଧାରାତ୍ମକ, ନୀତିମୂଳକ ଧାରାକୁ ବଦଳାଇ ଏକ ନୂତନ ଢଙ୍ଗ ଦେଖାଇଲେ । ୧୯୧୬ ଠାରୁ ୧୯୨୮ ମସୀହା ପର୍ଯ୍ୟନ୍ତ କାଳକୁ ପ୍ରେମଚନ୍ଦ୍ର ଯୁଗ କୁହାଯାଏ । ଗଳ୍ପର ପ୍ରୟୋଗ ଯଥାର୍ଥରେ ପ୍ରାକ୍‌ପ୍ରେମଚନ୍ଦ୍ର ଯୁଗରେ ହେଲା । ପ୍ରେମଚନ୍ଦ୍ର-ଯୁଗରେ ସୁଦର୍ଶନ, କୌଶିକ, ଗୁଲେରୀ ପ୍ରମୁଖ ଲେଖକ । ସେମାନଙ୍କ ଦ୍ୱାରା ହିନ୍ଦୀ-ଗଳ୍ପ ବିକଶିତ ହୋଇଅଛି ।

୧୯୨୮ ମସୀହା ପରଠାରୁ ହିନ୍ଦୀ-ଗଳ୍ପର ତୃତୀୟ ଚରଣର ପ୍ରାରମ୍ଭ ହୁଏ । ପ୍ରେମଚନ୍ଦ୍ର-ଯୁଗର ଚରିତ୍ର-ପ୍ରଧାନ ଓ ଆଦର୍ଶମୂଳକ ଧାରା ଏ କାଳରେ ପରିବର୍ତ୍ତିତ ହୋଇଥିଲା । ମନୋରଞ୍ଜନ ଆଉ ଗଳ୍ପର ଲକ୍ଷ୍ୟ ବୋଲି ବିବେଚିତ ହେଲାନାହିଁ । ଗଳ୍ପର ବାହ୍ୟରୂପ

ତଥା ଆଭ୍ୟନ୍ତରୀଣ ଆତ୍ମମୁଖ୍ୟ ବଦଳି ଯାଇଥିଲା । ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ 'ବାଦ'ର ପ୍ରଭାବ ଏତେ ପ୍ରବଳ ହେଲା ଯେ, ହିନ୍ଦୀ-ଗଳ୍ପ ଏ ଯୁଗରେ 'ବାଦ' (Ism)ର ବନ୍ଧନ ମଧ୍ୟରେ ଅଣନିଶ୍ୱାସୀ ହୋଇଉଠିଲା । ପ୍ରାକୃତବାଦ (Naturalism), ସ୍ୱଚ୍ଛନ୍ଦତା ବାଦ (Romanticism ), ଅନ୍ତଃଶ୍ଚେତନା ବାଦ, ପ୍ରଗତି ବାଦ, କଳାବାଦର ଧାରା ଏ କାଳରେ ଗଳ୍ପର ପରିସର ଓ ବ୍ୟାପକତାକୁ ସୁଦୂରପ୍ରସାରୀ କରିଅଛି । ଜୀବନ ପ୍ରତି ବିଦ୍ରୂପ ଓ ତିରସ୍କାର ମନୋବୃତ୍ତି, ଅନାସ୍ଥାତ୍ମକ ଦୃଷ୍ଟିକୋଣ, କଟୂକ୍ତିରେ ଗଳ୍ପଗୁଡ଼ିକ ଭରିଯାଉଛି ।

ସମାଜବାଦୀ ବା ସାମ୍ୟବାଦୀ କାହାଣୀକାରଗଣ ମାର୍କସଙ୍କର ଭୌତିକତା-ମୂଳ ଦର୍ଶନରେ ବିଶ୍ୱାସୀ ହୋଇ ସାମାଜିକ ଶୋଷଣ, ହୀନତାର ବିରୁଦ୍ଧରେ ବିପ୍ଳବାତ୍ମକ ବାଣୀ ପ୍ରଦାନ କରୁଅଛନ୍ତି । ଏମାନଙ୍କୁ ପ୍ରଗତିବାଦୀ ଲେଖକଙ୍କ ମଧ୍ୟରେ ପରିଗଣନା କରାଯାଏ । କେତେକ ସମାଲୋଚକ ଏ ଶ୍ରେଣୀର ଗଳ୍ପରେ କଳା (Art) ନାହିଁ ବୋଲି ମତ ଦେଇଅଛନ୍ତି । ରାଜନୀତି ସହିତ ଓତପ୍ରୋତ ଭାବରେ ଗଳ୍ପ ଜଡ଼ିତ ହୋଇ ପଡ଼ିଅଛି । ପ୍ରଚାରମୂଳକ ଧାରା ଏ ଗୁଡ଼ିକରେ ସ୍ପଷ୍ଟ । ଏହା ସବୁ ସତ୍ୟ ହେଲେହେଁ—ହିନ୍ଦୀ ଗଳ୍ପର ବିକାଶ ପ୍ରଗତି-ବାଦୀ ଲେଖକଙ୍କଦ୍ୱାରା ଯେ ହେଉଛି—ତାହା ଅସ୍ୱୀକାର କରାଯାଇ ପାରିବ ନାହିଁ । କୃଷ୍ଣଚନ୍ଦ୍ର, ଅମୃତରାୟ, ଯଶପାଳ ଏ ଶ୍ରେଣୀର ଲେଖକଙ୍କ ମଧ୍ୟରେ ପ୍ରଧାନ ।

ଅନ୍ତଶ୍ଚେତନବାଦୀ ବା ମନସ୍ତାତ୍ତ୍ୱିକ-ବାଦୀ ଲେଖକମାନେ ଜୀବନର ବିଲକ୍ଷଣତା ଓ ଅସନ୍ତୋଷକୁ ରୂପ ଦେଉଅଛନ୍ତି । ପାତ୍ର-ପାତ୍ରୀଙ୍କର ପ୍ରବୃତ୍ତିର ଯଥାର୍ଥ ରୂପ ଏଥିରେ ପ୍ରକଟିତ ହେଉଅଛି । ଦମିତ ଇଚ୍ଛାର ପୂର୍ତ୍ତି ଓ ଯୌନ-ସମାଗମର ପ୍ରତିକ୍ରିୟା ମନସ୍ତାତ୍ତ୍ୱିକ

-ବାଦୀ ଗଳ୍ପରେ ଦେଖାଯାଏ । ସୁସ୍ଥ ତଥା ଅସୁସ୍ଥ ମନୋବୃତ୍ତି ତଥା ପ୍ରବୃତ୍ତିର ବର୍ଣ୍ଣନା ଏମାନେ କରିଛନ୍ତି । ଅଜ୍ଞେୟ, ନରୋତ୍ତମ ପ୍ରସାଦ ନାଗ ଓ ପହାଡ଼ୀ ଆଦି ଏ ଶ୍ରେଣୀର ଲେଖକ । ଅବଶ୍ୟ ଅଜ୍ଞେୟଙ୍କର ଧାରା ମନସ୍ତାତ୍ତ୍ୱିକ ହେଲେହେଁ ସ୍ୱୀୟ ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛି । ବିଶୃଙ୍ଖଳ ଜୀବନର ଚିତ୍ର ଏଥିରେ ଅଧିକ ଜୀବନ୍ତ । ଜୀବନର ଉଦାତ୍ତଭାବ-ଭାବନାର ଏଠାରେ ଏକାନ୍ତ ଅଭାବ । ସ୍ଥୂଳତଃ ମନୋବୈଜ୍ଞାନିକ-ଲେଖକଗଣ ଆତ୍ମ-କ୍ଷୁବ୍‌ଧମାନବ ( Frustrated being )ର ରୂପାୟନ କରିଛନ୍ତି ।

ଯଶପାଳ, ଉଗ୍ର, ଋଷଭଚରଣ ଜୈନ ଓ ଚତୁର ସେନ ଶାସ୍ତ୍ରୀ ପ୍ରକୃତିବାଦୀ (Naturalistic) ଲେଖକ । ଫରାସୀ ଲେଖକ ଜୋଲା ଜୋଲଙ୍କର ଅନୁକରଣ ସେମାନେ କରିଛନ୍ତି । ବେଶ୍ୟା, ଦଲାଲ, ପାପ, ବ୍ୟଭିଚାରର ଚିତ୍ର ଏମାନଙ୍କର ଲେଖାମାନରେ ଆକର୍ଷଣୀୟ ରୂପ ପାଇଛି । କଳାର ସୌନ୍ଦର୍ଯ୍ୟ ଓ ରମଣୀୟତା ଅବଶ୍ୟ ଏଭଳି କୃତିମାନଙ୍କରେ ପ୍ରଶଂସନୀୟ । ତେବେ ୧୯୨୮ ମସୀହାର ପରେ ଅଳ୍ପକାଳ ପର୍ଯ୍ୟନ୍ତ ଏପରି ଗଳ୍ପ ଖୁବ୍ ଲେଖା ଯାଉଥିଲା । ପରେ ତାହା ହ୍ରାସୋନ୍ମୁଖୀ ହେବାର ଜଣାଯାଏ ।

କୌଣସି 'ବାଦ'ର ବଶବର୍ତ୍ତୀ ନ ହୋଇ ଯେଉଁମାନେ ଗଳ୍ପ-କ୍ଷେତ୍ରରେ ଆଗେଇଛନ୍ତି—ତନ୍ମଧ୍ୟରେ ନିରାଲା, ଜୈନେନ୍ଦ୍ର, ଭଗବତୀ ଚରଣ ବର୍ମା, ଉପେନ୍ଦ୍ରନାଥ ଅଶ୍କ ଓ ରାଧାକୃଷ୍ଣ ପ୍ରଧାନ । ଏମାନେ ପ୍ରବର୍ତ୍ତକ ନ ହୋଇ କଳାର ବିକାଶକ ହୋଇଛନ୍ତି । ବ୍ୟାପକ ଦୃଷ୍ଟି, ଜୀବନର ସମସ୍ୟା ପ୍ରତି ଜାଗରୂକତା ଏମାନଙ୍କଠାରେ ଦେଖାଯାଏ ।

ସ୍ଥୂଳତଃ ବର୍ତ୍ତମାନ କାଳରେ ସାମାଜିକ କାହାଣୀ, ରାଜନୈତିକ କାହାଣୀ, ଦାର୍ଶନିକ କାହାଣୀ, ମନୋବୈଜ୍ଞାନିକ ଓ ଯୌନ କାହାଣୀ

ଲେଖା ଯାଉଅଛି । ପ୍ରତ୍ୟେକ ଦିଗରେ ଅତି ଯଥାର୍ଥବାଦୀ ଶୈଳୀ ଦେଖା ଯାଉଅଛି । ଅଜ୍ଞେୟ, ଭଗବତୀ ଚରଣ, ବେଚନ, ଯଶପାଳ, ରାଧାକୃଷ୍ଣ ବର୍ତ୍ତମାନର ପ୍ରମୁଖ ଗଳ୍ପକାର । ଭଗବତୀଙ୍କର ଲେଖାରେ ବିଦ୍ରୋହର ଭାବନା ଅଧିକ । ବେଚନଙ୍କର ଲେଖାରେ ହାସ୍ୟ-ରସିକତା ଓ ବ୍ୟଙ୍ଗୋକ୍ତି ଲକ୍ଷ୍ୟଣୀୟ ବିଭବ । ଯଶପାଳ ପ୍ରାଣବାନ ଭାଷା ଓ ଜୀବନ୍ତ ଚିତ୍ରଣ ମଧ୍ୟରେ ମାନବତାବାଦର ସନ୍ଧାନ ଦେଇଛନ୍ତି । ରାଧାକୃଷ୍ଣ 'ଘୋଷ ବୋଷ ବାନର୍ଜି' ପରି ହାସ୍ୟ-ରସାତ୍ମକ ଗଳ୍ପ ଲେଖି ଯେପରି ପ୍ରଶଂସ୍ୟ ହୋଇଛନ୍ତି, ସେହିପରି କେତେକ ଗାମ୍ଭୀର୍ଯ୍ୟ-ପୂର୍ଣ୍ଣ ଗଳ୍ପ ଲେଖି କୃତକାର୍ଯ୍ୟ ହୋଇଛନ୍ତି । ଅଜ୍ଞେୟ ମାନବ-ମନର ଅନ୍ତର୍ଦ୍ୱନ୍ଦ୍ୱର ସଫଳ ଅଭିବ୍ୟକ୍ତି ଦେଇ ପ୍ରଶଂସ୍ୟ ହୋଇଛନ୍ତି । ଇଲାଚନ୍ଦ୍ର ଯୋଶୀ ମନୋବିଜ୍ଞାନ ମୂଳକ ଗଳ୍ପରେ ବେଶ୍ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ଏମାନଙ୍କ ବ୍ୟତୀତ ସୁଭଦ୍ରା କୁମାରୀ ଚୌହାନ, ଉଷାଦେବୀ ମିତ୍ରା, ହୋମବତୀ, କମଳା-ତ୍ରିବେଣୀ ଶଙ୍କର, ଚନ୍ଦ୍ରକିରଣ ସୋନେରିକ୍ସା ଆଦି ନାରୀ-ଲେଖିକା ଗଣ ଗଳ୍ପ ଲେଖି ହିନ୍ଦୀ-ସାହିତ୍ୟକୁ ସମୃଦ୍ଧ କରୁଅଛନ୍ତି । ଶ୍ରୀ ରାହୁଲ ସାଂକୃତ୍ୟାୟନ ଓ ଭଗବତୀ ଚରଣ ବର୍ମା ଐତିହାସିକ-ଗଳ୍ପ ଲେଖି ହିନ୍ଦୀ-ସାହିତ୍ୟର ଏକ ଅଭାବ ପୂରଣ କରିଛନ୍ତି । ରାମବୃକ୍ଷ ବେନି-ପୁରୀ ତଥା ନଳିନୀ ବିଲୋଚନ ଶର୍ମା, ବିହାର-ପ୍ରାନ୍ତର ଗଳ୍ପ ଲେଖିବାରେ ଯତ୍ନଶୀଳ ହୋଇଛନ୍ତି । ଦେବେନ୍ଦ୍ର ସତ୍ୟାର୍ଥୀ, ଶିବପ୍ରସାଦ ମିଶ୍ର, ଶ୍ରୀ ମନ୍ମଥନାଥ ଗୁପ୍ତ ଆଦି ଗଳ୍ପର ବିକାଶରେ ଯଥେଷ୍ଟ ଦାନ କରୁଅଛନ୍ତି ।

କାହାଣୀ-କଳା ହିନ୍ଦୀ-ସାହିତ୍ୟକୁ ପାଶ୍ଚାତ୍ୟର ଦାନ ହେଲେ ହେଁ, କ୍ରମଶଃ ମୌଳିକତା ସୃଷ୍ଟି ହେଉଅଛି । ହିନ୍ଦୀ-ଗଳ୍ପରେ ମୁଖ୍ୟତଃ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ପ୍ରକଟିତ । ପ୍ରେମଚନ୍ଦ୍ର କେତେକ

କାହାଣୀରେ ସର୍ବହରା, କୃଷକ ଓ ମୂଲିଆ ଶ୍ରେଣୀର ଜୀବନର ଆଲେଖ୍ୟ ରୂପାୟନ କରିଛନ୍ତି । ପ୍ରଗତିବାଦୀ କମ୍ୟୁନିଷ୍ଟ ପନ୍ଥୀ ଲେଖକଗଣ ଉପେକ୍ଷିତ ଦଳିତ ବର୍ଗର ଅଧିକ ଚିତ୍ର ତାଙ୍କର ପରେ ପ୍ରଦାନ କଲେ । ସ୍ଥୂଳତଃ ହିନ୍ଦୀ-ଗଳ୍ପରେ ମଧ୍ୟବିତ୍ତ ବର୍ଗର ସଂସାରର ସୁନ୍ଦର, ପ୍ରଶସ୍ତ ଓ ବୈଚିତ୍ର୍ୟପୂର୍ଣ୍ଣ ଅଭିବ୍ୟକ୍ତି ସମ୍ଭବ ହୋଇଛି । ଏହି ବର୍ଗର ଦ୍ୱନ୍ଦ୍ୱ, ଆଦର୍ଶ, ହର୍ଷ-ବିମର୍ଷ ଦୁଃଖ-ସୁଖର କାହାଣୀ ଗଳ୍ପରେ ଜୀବନ୍ତ । ପତ୍ର-ପତ୍ରିକାର ବହୁଳ ପ୍ରଚଳନ ଗଳ୍ପକୁ ଆଜି ସାହିତ୍ୟର ମୁଖ୍ୟ ଅଙ୍ଗରେ ପରିଣତ କରିଅଛି ।

---

# ହିନ୍ଦୀ-ନାଟକର ଉନ୍ମେଷ ଓ ବିକାଶ

ପ୍ରାଚୀନ-ସାହିତ୍ୟ କାବ୍ୟମୟ । ସଂସ୍କୃତ-ନାଟକରେ କାବ୍ୟତ୍ଵ ଯେତେ, ନାଟକୀୟତା ସେତେ ନୁହେଁ । ପ୍ରାଚୀନ-କାଳରେ ବନାରସୀ ଦାସଙ୍କର 'ସମୟସାର ନାଟକ' ( ୧୬୯୩ ସମ୍ବତ୍ ), ପ୍ରାଣଚନ୍ଦ୍ର ଚୌହାନଙ୍କର 'ରାମାୟଣ ମହାନାଟକ' (୧୬୬୭ ସମ୍ବତ୍), ରଘୁରାୟ ନାଗରଙ୍କର 'ସଭାସାର' (୧୯୫୭ ସମ୍ବତ୍) ଓ ଲଛିରାମଙ୍କର 'କରୁଣା ମରଣ' (୧୬୭୨ ସମ୍ବତ୍) ନାମକ ଯେଉଁ ନାଟକ ମିଳେ, ତାହା ସବୁ ଛନ୍ଦୋବଦ୍ଧ । ସେଗୁଡ଼ିକୁ ଆଧୁନିକ ନାଟକର ପର୍ଯ୍ୟାୟଭୁକ୍ତ କରାଯାଇ ନ ପାରେ । ସନ୍ଥକବି ତୁଳସୀ ଦାସ ପ୍ରଥମେ ହିନ୍ଦୀରେ 'ରାମଲୀଳା'ର ଯୋଜନା କରିଥିବାର ଜଣାଯାଏ । କ୍ରମେ ରାମଲୀଳାର ଅନୁକରଣରେ ବ୍ରଜ-ଲୀଳାର ସୃଷ୍ଟି ହୋଇଥିଲା । ଏ ସବୁରେ ପଦ୍ୟର ପ୍ରୟୋଗ ହୋଇଛି । ଗଦ୍ୟର ପ୍ରୟୋଗ ପ୍ରାୟ ନାହିଁ କହିଲେ ଚଳେ ।

ବ୍ରଜ-ଭାଷାର ଗଦ୍ୟ ଶୋଡ଼ଷ ଶତାବ୍ଦୀରୁ ସୃଷ୍ଟ ହୋଇଥିଲେ ହେଁ, ତାହାର ପ୍ରଥମ ପ୍ରୟୋଗ ୧୮୫୯ ଖ୍ରୀଷ୍ଟାବ୍ଦରେ ଲିଖିତ 'ନହୁଷ' ନାମକ ନାଟକରେ ହୋଇଥିବାର ଜଣାଯାଏ । ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର ପିତା ଏହି ନାଟକର ସ୍ରଷ୍ଟା ଥିଲେ । ବ୍ରିଟିଶ ଶାସନର ପ୍ରତିଷ୍ଠା ପରେ ହିନ୍ଦୀରେ ନାଟକ ଲେଖା ଯଥାର୍ଥରେ ଆରମ୍ଭ ହୋଇଥିଲା । ତେବେ ଏହା ଅନୁବାଦର ଯୁଗ । ୧୮୬୧ ଖ୍ରୀଷ୍ଟାବ୍ଦରେ ରାଜା ଲକ୍ଷ୍ମଣ ସିଂହ ସଂସ୍କୃତରୁ 'ଶକୁନ୍ତଳା' ନାଟକ ଅନୁବାଦ

କରିଥିଲେ । ସେକ୍ସପିଅର, ଗୋଲ୍ଡସ୍ମିଥ ଓ ଏଡ଼ିସନ୍‌ଙ୍କର ଲିଖିତ ଇଂରେଜୀ-ନାଟକର ଅଭିନୟ ଏହି କାଳରେ ଶିକ୍ଷାନୁଷ୍ଠାନ-ମାନଙ୍କରେ ହେଉଥିଲା । ସ୍ୱୟଂ ଭାରତେନ୍ଦୁ ସାତ ଗୋଟି ନାଟକ ଅନୁବାଦ କରିଥିଲେ । ବଙ୍ଗଳା-ନାଟକର ଅନୁବାଦ ଏହି କାଳରେ ମଧ୍ୟ ହୋଇଥିଲା । କ୍ରମେ ଇଂରାଜୀ ଶିକ୍ଷା ଓ ସଭ୍ୟତା ପ୍ରତି ଜନତା ମଧ୍ୟରେ ବ୍ୟଙ୍ଗ, ଉପହାସ ଓ ଆଶଙ୍କା ଦେଖାଦେଲା । ଫଳରେ 'ପ୍ରହସନ'ର ସୃଷ୍ଟି ସମ୍ଭବ ହେଲା ।

ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କଠାରୁ ସାଧାରଣତଃ ହିନ୍ଦୀ ଆଧୁନିକ ନାଟକର ଯୁଗ ଆରମ୍ଭ ହୋଇଛି ବୋଲି ଧରାଯାଏ । ସେ ପ୍ରଥମେ ପ୍ରହସନ ଲେଖା ଆରମ୍ଭ କରିଥିଲେ । ୧୮୭୩ ଖ୍ରୀଷ୍ଟାବ୍ଦରେ ସେ 'ବୈଦିକ ହିଂସା ହିଂସା ନ ଭବତି' ନାମକ ପ୍ରହସନ ପ୍ରଥମେ ଲେଖିଲେ । ତାପରେ 'ପ୍ରେମଯୋଗିନୀ'ରେ ମନ୍ଦିରର ପୂଜକ ଓ ଅଧିକାରୀମାନଙ୍କ ସମ୍ବନ୍ଧରେ ବ୍ୟଙ୍ଗ ପ୍ରକଟିତ ହେଲା । ତାଙ୍କର 'ଚନ୍ଦ୍ରାବଳୀ'ରେ ବୈଷ୍ଣବ ଭକ୍ତିର ନୂତନ ରୂପ ଓ 'ସତ୍ୟପ୍ରତାପ'ରେ ପୌରାଣିକତା ନିହିତ । ୧୮୭୫ରେ ଲିଖିତ 'ବିଷସ୍ୟ ବିଷମୌଷଧମ୍' ଓ ୧୮୮୨ରେ ଲିଖିତ 'ଅନ୍ଧେରୀ ନଗରୀ' ଭାରତେନ୍ଦୁଙ୍କର ଅନ୍ୟ ଦୁଇଟି ପ୍ରହସନମୂଳକ ଲେଖା ଅଟେ । 'ନୀଳଦେବୀ' ଓ 'ଭାରତ ଦୁର୍ଦ୍ଦଶା' ନାଟକରେ ସେ ୧୮୮୦ ମସିହାରେ ରାଷ୍ଟ୍ରୀୟ ଭାବ-ଭାବନା ଦେଲେ । ପ୍ରଥମେ ଅନୁବାଦରେ ସିଦ୍ଧହସ୍ତ ହେବା ପରେ ଭାରତେନ୍ଦୁ ମୌଳିକ ସୃଷ୍ଟିରେ ମନ ଦେଇଥିଲେ । ସଂସ୍କୃତ, ଇଂରାଜୀ, ବଙ୍ଗଳା ନାଟକର ପ୍ରଭାବ ତାଙ୍କର ଲେଖାମାନରେ ରହିଛି । ମୂଳତଃ ଜଣାଯାଏ ଯେ ଭାରତେନ୍ଦୁ ହିଁ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଆଧୁନିକ ହିନ୍ଦୀ ନାଟକର ସୃଷ୍ଟି କରିଛନ୍ତି ।

ଭାରତେନ୍ଦୁ ହିନ୍ଦୀ ନାଟକର ପୌରାଣିକ, ଐତିହାସିକ, ରାଷ୍ଟ୍ରୀୟ, ଯଥାର୍ଥବାଦୀ, ଭକ୍ତିରସପୂର୍ଣ୍ଣ, ପ୍ରହସନାତ୍ମକ ଧାରାର ପ୍ରବର୍ତ୍ତକ । ଯଥାର୍ଥବାଦୀ ଧାରାରେ ଲିଖିତ 'ପ୍ରେମଯୋଗିନୀ'ର ଆଦର୍ଶକୁ ନେଇ ତାଙ୍କର ତ୍ରିଶ ପଚିଶ ବର୍ଷ ପରେ ଲକ୍ଷ୍ମୀନାରାୟଣ ମିଶ୍ର ଯଥାର୍ଥବାଦୀ ନାଟକ ଲେଖିଲେ । ଭକ୍ତିରସାତ୍ମକ ଧାରାରେ ଲିଖିତ 'ଚନ୍ଦ୍ରାବଳୀ' ନାଟକର ଆଦର୍ଶ ଭାରତେନ୍ଦୁଙ୍କର ପରେ ଆଉ ବିକାଶ ପାଇଲା ନାହିଁ । ଚନ୍ଦ୍ରବର୍ମା, ଶ୍ରୀନିବାସ ଦାସ, କାର୍ତ୍ତିକ-ପ୍ରସାଦ ବର୍ମା ଆଦି ପୌରାଣିକ ଧାରାରେ ନାଟକ ଲେଖିଥିଲେ । ଶ୍ରୀନିବାସ ଦାସ, ଅମରସିଂହ ରାଠୋର ଓ ରାଧାକୃଷ୍ଣ ଦାସ ଆଦି ଐତିହାସିକ ଧାରାକୁ ଗ୍ରହଣ କରି ନେଇଥିଲେ । ଅମ୍ବିକାଦତ୍ତ ବ୍ୟାସ ଓ ଜଗତନାରାୟଣ ଶର୍ମା ଆଦି ରାଷ୍ଟ୍ରୀୟ-ଧାରାରେ ଲେଖନୀ ଚଳାଇ-ଥିଲେ । ଦେବକୀନନ୍ଦନ ଖତ୍ରୀ, ଦେବଦତ୍ତ ମିଶ୍ର ଓ ଅମ୍ବିକାଦତ୍ତବ୍ୟାସ ପ୍ରହସନ ଲେଖି ସୁନାମ ଅର୍ଜ୍ଜନ କରିଥିଲେ । ରୋମାଣ୍ଟିକ୍ ବା ସ୍ୱଚ୍ଛନ୍ଦତାବାଦ ପ୍ରେମମୂଳକ ପୌରାଣିକ ନାଟକରେ ଦେଖାଯାଏ । ଭାରତେନ୍ଦୁଙ୍କର ଲେଖାରେ ଏହି ସ୍ୱଚ୍ଛନ୍ଦତା-ବାଦୀ ଭାବ-ଭାବନା ନିହିତ ଥିଲା । କେଶବରାମ, ରାଧାକୃଷ୍ଣ, ଶ୍ରୀନିବାସ, ଅମ୍ବିକାଦତ୍ତ ଓ କିଶୋରୀଲାଲ ଆଦି ରୋମାଣ୍ଟିକ୍-ଧାରାରେ ନାଟକର ସୃଷ୍ଟି କରିଥିଲେ । ରାସଲୀଳା ଓ ରାମଲୀଳା ସୃଷ୍ଟିର ଅଭାବ ନ ଥିଲା । ହରିହର ଦତ୍ତ ବାହାଦୁର ମଲ୍ଲ ଏ ଦିଗରେ ଯତ୍ନକରି ଯଶସ୍ୱୀ ହୋଇଥିଲେ । ଊନବିଂଶ ଶତାବ୍ଦୀରେ ନାଟକର ବିଭିନ୍ନ ଧାରା ଉପରୋକ୍ତ ଭାବରେ ବିକାଶପ୍ରାପ୍ତ ହେଉଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ଏହି ସ୍ଥିତି ପ୍ରବର୍ତ୍ତିତ ରହିଥିବାର ଦେଖାଯାଏ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକରେ ଜୟଶଙ୍କର-ପ୍ରସାଦଙ୍କର ଆବିର୍ଭାବ ହିନ୍ଦୀ-ନାଟକକୁ ଉତ୍ତରୋତ୍ତର ଉନ୍ନତି ଦିଗରେ

ପ୍ରଧାବିତ କରାଇଥିଲା । 'ସଜ୍ଜନ', 'କଲ୍ୟାଣୀ ପରିଣୟ', 'କରୁଣାଳୟ', 'ପ୍ରାୟଶ୍ଚିତ୍ତ' ଆଦି ତାଙ୍କର ପ୍ରାରମ୍ଭିକ କୃତି । 'କରୁଣାଳୟ' ଓ 'ବିଶ୍ୱାମିତ୍ର-ମେନକାଶ୍ରୀ' ଗୀତି-ନାଟ୍ୟ ଅଟେ । କଲ୍ୟାଣୀ ପରିଣୟ ଓ 'ପ୍ରାୟଶ୍ଚିତ୍ତ' ଐତିହାସିକ ନାଟକ ଅଟେ । ତାଙ୍କର 'ରାଜ୍ୟଶ୍ରୀ' ଓ 'ବିଶାଖା' ନାଟକରେ ଇତିହାସ ଆଧାର ସତ୍ୟ, କିନ୍ତୁ ଐତିହାସିକ ମହିମାମୂଳତା ସେଥିରେ ନାହିଁ । ସେ ମୂଳତଃ ଐତିହାସିକ, ପୌରାଣିକ ଓ ରୂପାତ୍ମକ ନାଟକ ଲେଖି ଯାଇଛନ୍ତି । ତାଙ୍କର ନାଟକରେ ଭାରତେନ୍ଦୁ-ଯୁଗର ଆଦର୍ଶବାଦୀ ଓ ସ୍ୱଚ୍ଛନ୍ଦତାବାଦୀ ଧାରା ଅକ୍ଷୁଣ୍ଣ ରହିଛି । କବିତ୍ୱପୂର୍ଣ୍ଣ ଅଳଂକୃତ ଭାଷା, ଦାର୍ଶନିକତା ତାଙ୍କର କୃତିରେ ଅଧିକ । ତାଙ୍କର ନାଟକ ଅଭିନୟୋପଯୋଗୀ ନୁହେଁ । ଅଧିକନ୍ତୁ ସେ କାଳରେ ରଙ୍ଗମଞ୍ଚର ଘୋର ଅଭାବ ରହିଥିଲା । ଏ କ୍ଷେତ୍ରରେ 'ଚନ୍ଦ୍ରଗୁପ୍ତ' ଓ 'ସ୍କନ୍ଦଗୁପ୍ତ' ମଧ୍ୟ ବିଶିଷ୍ଟ ଆସନର ଅଧିକାରୀ ।

ଏ କାଳର ଆଦର୍ଶବାଦୀ ନାଟକ ମଧ୍ୟରେ କୃଷ୍ଣପ୍ରକାଶ ସିଂହଙ୍କର 'ପାନ୍ନା', ବଦରୀନାଥ ଭଟ୍ଟଙ୍କର 'ଚନ୍ଦ୍ରଗୁପ୍ତ', ହରିଦାସ ମାଣିକଙ୍କର 'ସଂଯୋଗୀତା ହରଣ', ସୁଦର୍ଶନଙ୍କର 'ଦୟାନନ୍ଦ', ଚନ୍ଦ୍ରରାଜ ଭଣ୍ଡାରୀଙ୍କର 'ସିଦ୍ଧାର୍ଥ କୁମାର' ଓ 'ସମ୍ରାଟ ଅଶୋକ', ବଦ୍ରୀନାଥ ଭଟ୍ଟଙ୍କର 'ଗୋସ୍ୱାମୀ ତୁଳସୀଦାସ', ବେଚନ ଶର୍ମା ଉଗ୍ରଙ୍କର 'ମହାତ୍ମା ଇସା' ପ୍ରଧାନ । ୧୯୧୬ ଠାରୁ ୧୯୧୭ ମଧ୍ୟରେ ବଂଗୀୟ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲଙ୍କର ସମସ୍ତ ନାଟକ ହିନ୍ଦୀରେ ଅନୂଦିତ ହୋଇଥିଲା । ଏ କାଳର ପ୍ରହସନ ଲେଖା ଏତେ ମହତ୍ତ୍ୱ-ପୂର୍ଣ୍ଣ ନୁହେଁ । ୧୯୨୦ ମସିହା ପରେ କେତେକ ସ୍ୱଚ୍ଛନ୍ଦତାବାଦୀ ନାଟକ ମଧ୍ୟ ଲେଖାଯାଇଥିଲା । ସୁଦର୍ଶନଙ୍କର 'ଅଞ୍ଜନା', ଗୋବିନ୍ଦ ବଲ୍ଲଭ ପନ୍ତଙ୍କର 'ବରମାଳା' ଓ ଧର୍ମାରାମଙ୍କର 'ପ୍ରାଣେଶ୍ୱରୀ' ଏ ଧାରାର ଉଲ୍ଲେଖଯୋଗ୍ୟ କୃତି ।

ବିଂଶ ଶତାବ୍ଦୀର ୪ର୍ଥ ଦଶକରେ ଯଥାର୍ଥବାଦୀ, ବସ୍ତୁବାଦୀ ଧାରା ଆସିଥିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ଏହାର ପ୍ରବର୍ତ୍ତକ । ତାଙ୍କର 'ସନ୍ନ୍ୟାସୀ', 'ରାକ୍ଷସ କା ମନ୍ଦିର', 'ମୁକ୍ତି କା ରହସ୍ୟ', 'ରାଜଯୋଗ', 'ସିନ୍ଦୂର କୀ ହୋଲି' ଏହି ଧାରାର ପ୍ରଧାନ ସୃଷ୍ଟି । ଏଗୁଡ଼ିକରେ ଇଂରେଜୀ ନାଟ୍ୟକାର ବାର୍ନାର୍ଡ଼ ଶ ଓ ଇବ୍‌ସନଙ୍କର କଳାର ପ୍ରଭାବ ଦେଖିବାକୁ ମିଳେ । ପଣ୍ଡିତ ମିଶ୍ରଙ୍କର ପୂର୍ବ ଯୁଗରେ ନାଟ୍ୟକାରମାନଙ୍କର ଦୃଷ୍ଟି କାଳିଦାସ, ସେକ୍‌ସପିଅର ଓ ଦ୍ୱିଜେନ୍ଦ୍ରଲାଲଙ୍କ ଉପରେ ନିବଦ୍ଧ ଥିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ଏହି ଦୃଷ୍ଟିଭଙ୍ଗୀରେ ପରି-ବର୍ତ୍ତନ ଆନୟନ କରିଥିଲେ । ତାଙ୍କର ନାଟକ 'ସମସ୍ୟାମୂଳକ ଅଟେ । ଅବଶ୍ୟ ଭାରତେନ୍ଦୁ 'ପ୍ରେମଯୋଗିନୀ'ରେ ଏହି ଧାରାର ସୂତ୍ରପାତ କରିଥିଲେ । ଜୟଶଙ୍କରପ୍ରସାଦ ତାଙ୍କ ନାଟକରେ ସମସାମୟିକ ସମସ୍ୟାର ଚିତ୍ର ମଧ୍ୟ ଦେଇଥିଲେ । କିନ୍ତୁ ପଣ୍ଡିତ ଲକ୍ଷ୍ମୀନାରାୟଣ ପୂର୍ବ ଯୁଗର ସ୍ୱଗତୋକ୍ତି, ଅଶ୍ରାବ୍ୟ, ଭାବୁକତାପୂର୍ଣ୍ଣ ସଂଳାପ, ଭାଷାର ଆଳଙ୍କାରିତାକୁ ପରିବର୍ତ୍ତନ କରି ଯଥାର୍ଥବାଦୀ ନାଟକ ହିନ୍ଦୀ-ସାହିତ୍ୟକୁ ପ୍ରଦାନ କରିଥିଲେ ।

୧୯୩୧ ମସିହାଠାରୁ ୧୯୪୦ ପର୍ଯ୍ୟନ୍ତ ଆଦର୍ଶବାଦୀ ଐତିହାସିକ ଓ ଯଥାର୍ଥବାଦୀ ଧାରାର ଲେଖା ସମାନ୍ତରାଳ ଭାବରେ ଗତି କରୁଥିଲା । ଆଦର୍ଶବାଦୀ ଧାରାରେ ଉଦୟଶଙ୍କର ଭଟ୍ଟ ଓ ଗୋବିନ୍ଦ ଦାସ ପ୍ରଧାନ ଲେଖକ । ଉଦୟଶଙ୍କର ଅପେରା-ଶୈଳୀରେ ଗୀତିନାଟ୍ୟ ସୃଷ୍ଟି କରିଥିବାର ଜଣାଯାଏ । ତାଙ୍କର 'ବିକାସ', 'ସପ୍ତରଶ୍ମି', 'ହର୍ଷ', 'ପଂଚଭୂତ' ଆଦିରେ ନାଟକୀୟ-କଳାର ବିବିଧ ରୂପ ଦେଖିବାକୁ ମିଳେ । ଉପେନ୍ଦ୍ରନାଥ ଅଶ୍କଙ୍କର 'ଜୟ ପରାଜୟ', 'ସ୍ୱର୍ଗ କୀ ଝଲକ୍' ନାଟକକୁ ଏହି ଶ୍ରେଣୀଭୁକ୍ତ କରାଯାଇ-ପାରେ । ସେ ଏକାଙ୍କୀ ରଚନାରେ ଗାର୍ହସ୍ଥ୍ୟ ଜୀବନର ଯଥାର୍ଥୋନ୍ମୁଖୀ ଚିତ୍ର ଦେଇ ବାସ୍ତବବାଦୀ କଳା ପ୍ରଦର୍ଶନ କରିଛନ୍ତି । 'ଆଧୀ ରାତ'

ରଚନା ପରେ ଲକ୍ଷ୍ମୀନାରାୟଣ ମିଶ୍ର ନାଟକୀୟ କଳାର ନୂତନ ରୂପର ସୂଚନା ଦେଲେ । ତାଙ୍କର 'ଗରୁଡ଼ଧ୍ୱଜ', 'ନାରଦ କୀ ବୀଣା', 'ବତ୍ସରାଜ' ଆଦି ଲେଖା ଐତିହାସିକ ସତ୍ୟ, କିନ୍ତୁ ସେଗୁଡ଼ିକର ବସ୍ତୁର-ପଦ୍ଧତି ଓ କଳା-ବିନ୍ୟାସ ଜୟଶଙ୍କରପ୍ରସାଦଙ୍କର ତୁଳନାରେ ସ୍ୱତନ୍ତ୍ର । ଡାକ୍ତର ସତ୍ୟେନ୍ଦ୍ରଙ୍କର 'ମୁକ୍ତିପଥ', ଜନାର୍ଦ୍ଦନ ରାୟଙ୍କର 'ରକ୍ଷାବନ୍ଧନ', ମୁରାରୀ ମାଙ୍ଗଳିକଙ୍କର 'ମୀରା', 'ବିଶ୍ୱମ୍ଭର-ସହାୟଙ୍କର 'ବୁଦ୍ଧଦେବ' ରଙ୍ଗମଞ୍ଚୀୟ ନାଟକ ଅଟେ ।

୧୯୪୦ ମସିହା ପରେ ନୂତନ ଆନ୍ଦୋଳନର ଜନ୍ମ ହୁଏ । କମ୍ୟୁନିଷ୍ଟ ଲେଖକମଣ୍ଡଳୀର ପ୍ରୟାସରେ 'ଇଣ୍ଡିଆନ ନେଶନାଲ୍ ଥିଏଟର' ନାମକ ସଂସ୍ଥାର ସୃଷ୍ଟି ହୋଇଥିଲା । କୃଷକ ଆନ୍ଦୋଳନ, ବଙ୍ଗ-ଦୁର୍ଭିକ୍ଷ, ଜାପାନର ଆକ୍ରମଣକୁ ଭିତ୍ତି କରି ଅନେକ ଗଣନାଟକ ୧୯୪୦ ମସିହା ପରେ ରଚିତ ହୋଇଅଛି । ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ପାଇଁ ଏବେ ଏକାଙ୍କୀ ରଚନା ବିଶେଷ ଭାବରେ ହେଉଅଛି । ପ୍ରଥମେ ଜୟଶଙ୍କର ପ୍ରସାଦ 'ଏକ ଘୁଁଟେ' ନାମକ ଏକାଙ୍କିକା ଲେଖିଥିଲେ । ତାପରେ 'କାରୱାଁ' ନାମକ ଏକାଙ୍କୀ ଭୁବନେଶ୍ୱର ପ୍ରସାଦଙ୍କ ଦ୍ୱାରା ଲିଖିତ ହୋଇ ଏକ ନୂତନ ପ୍ରୟୋଗର ଧାରା ପ୍ରକାଶ କରିଥିଲା । ଏଥିରେ ଇବ୍‌ସନଙ୍କର ପ୍ରଭାବ ଅତ୍ୟଧିକ ଥିଲା । ସମାଜର ପ୍ରଚଳିତ ବିବାହ-ପଦ୍ଧତିକୁ ଉଚ୍ଛେଦନ କରିବା ହିଁ ଏହି ଏକାଙ୍କିକାର ପ୍ରତିପାଦ୍ୟ ବସ୍ତୁ । ଡାକ୍ତର ରାମକୁମାର ବର୍ମାଙ୍କର ଲିଖିତ 'ପୃଥ୍ୱୀରାଜ କୀ ଆଁଖେ' 'ରେଶମୀ ଟାଇ', 'ଚାରୁମିତ୍ରା', 'ସପ୍ତକିରଣ' ଓ 'ରୂପରଙ୍ଗ' ଏକାଙ୍କିକାଗୁଡ଼ିକରେ ପାତ୍ର ମଧ୍ୟବର୍ଗୀୟ ସୁଶିକ୍ଷିତ ଓ ସୁସଂସ୍କୃତ ଅଟନ୍ତି । ଭାରତୀୟ ଆଦର୍ଶରେ ଲେଖକ ବିଶ୍ୱାସ ରଖି ତ୍ୟାଗ, ଦୟା, କରୁଣା ଆଦି ସାତ୍ତ୍ୱିକ ମନୋବୃତ୍ତିର ପ୍ରକାଶ କରିଛନ୍ତି । ହରିକୃଷ୍ଣ ପ୍ରେମୀ ମଧ୍ୟକାଳୀନ ଐତିହାସିକ କଥାକୁ ଏକାଙ୍କୀରେ ସ୍ଥାନ ଦେଇଛନ୍ତି । ସେଠ ଗୋବିନ୍ଦ ଦାସ ତଥାପି

କୃତରେ ଗାନ୍ଧୀବାଦକୁ ମୂଳାଧାର ରୂପେ ନେଇଛନ୍ତି । ଉଦୟଶଙ୍କର ଭଟ୍ଟଙ୍କର ଏକାଙ୍କିକା ସାମାଜିକ ଉଦ୍ଦେଶ୍ୟ-ପ୍ରଧାନ ଅଟେ । ଉପେନ୍ଦ୍ର-ନାଥ ଅଶ୍କ ମଧ୍ୟ ଜଣେ ପ୍ରମୁଖ ଏକାଙ୍କିକା ଲେଖକ । ମଧ୍ୟବର୍ଗୀୟ-ପାରିବାରିକ ଜୀବନ-ସମସ୍ୟାର ଚିତ୍ର, ମନୋବୈଜ୍ଞାନିକ-ବିଶ୍ଳେଷଣ, ସାମାଜିକ ବ୍ୟଙ୍ଗ ତାଙ୍କ କୃତିରେ ମିଳେ । ଉଗ୍ର, ସଦ୍ଗୁରୁଶରଣ ଅବସ୍ଥୀ, ଗଣେଶପ୍ରସାଦ ଦ୍ୱିବେଦୀଙ୍କର ଏ ଦିଗରେ ଦାନ ମହତ୍ୱପୂର୍ଣ୍ଣ । ରଙ୍ଗମଞ୍ଚ ଦୃଷ୍ଟିରୁ ଜଗଦୀଶଚନ୍ଦ୍ରଙ୍କର 'ଘେର କା ଡାଗ୍' ଏକ ଉଲ୍ଲେଖନୀୟ ସୃଷ୍ଟି । ବିଷ୍ଣୁ ପ୍ରଭାକର ନବୀନ ସାମାଜିକ ଦୃଷ୍ଟି-କୋଣରୁ ସୁନ୍ଦର ଏକାଙ୍କିକା ରଚନା କରିଛନ୍ତି । ରେଡ଼ିଓ-ଷ୍ଟେସନ୍‌ର ପ୍ରସାର ଫଳରେ ଧ୍ୱନି-ପ୍ରଧାନ ଏକାଙ୍କିକା ରଚିତ ହେଉଅଛି । ଲକ୍ଷ୍ମୀନାରାୟଣ ମିଶ୍ର, ଭଗବତୀଚରଣ ବର୍ମା ଓ ବୃନ୍ଦାବନଲାଲ ବର୍ମା ଏହି ଧାରାର ରଚନାରେ ପ୍ରବୃତ୍ତ ହୋଇଛନ୍ତି । ସ୍ଥୂଳତଃ ଅତ୍ୟାଧୁନିକ ଯୁଗ ଏକାଙ୍କିକା ରଚନାର କାଳ ।

ହିନ୍ଦୀ ନାଟ୍ୟ-ସାହିତ୍ୟର ଆଲୋଚନାରୁ ଜଣାଯାଏ ଯେ ହିନ୍ଦୀରେ ନାଟକ ବିଶେଷ ବିକାଶ ଲାଭ କରି ପାରି ନାହିଁ । ଭାରତେନ୍ଦୁ ଓ ଜୟଶଙ୍କର ପ୍ରସାଦଙ୍କ ଭିନ୍ନ ନାଟକ ରଚନାରେ ପ୍ରତିଭା-ସମ୍ପନ୍ନ ବ୍ୟକ୍ତିଙ୍କର ଘୋର ଅଭାବ । ରଙ୍ଗମଞ୍ଚର ଅଭାବ ଯୋଗୁଁ ଅଧିକାଂଶ ନାଟକ ସାହିତ୍ୟିକ ହୋଇ ଯାଉଅଛି ଓ ପାଠ୍ୟରୂପେ ରହି ଯାଉଅଛି । ନାଟକୀୟତା ଦିଗରୁ ଦେଖିଲେ, ଅଧିକାଂଶଙ୍କର ମହତ୍ୱପୂର୍ଣ୍ଣତା ପ୍ରତିପାଦିତ ହୋଇପାରେ ନାହିଁ । ଅନ୍ୟାନ୍ୟ ଆଧୁନିକ ଭାରତୀୟ ନାଟ୍ୟସାହିତ୍ୟର ତୁଳନାରେ ଏ ଦିଗରେ ହିନ୍ଦୀ-ସାହିତ୍ୟ ଅଗ୍ରସର ହୋଇ ପାରିନାହିଁ । ସଂସ୍କୃତ, ବଙ୍ଗଳା, ଇଂରାଜୀ ସାହିତ୍ୟର ଧାରାରୁ ମୁକ୍ତ ହୋଇ ନାଟକ ମୌଳିକ-ସୃଷ୍ଟି ରୂପରେ ଦେଖା ଦେଇ ପାରିନାହିଁ । ରଙ୍ଗମଞ୍ଚୋପଯୋଗୀ ନାଟକ ହିନ୍ଦୀରେ ଅଧିକ ଦେଖାଯାଏ ନାହିଁ ।

---

(୭ମ)

# ହିନ୍ଦୀ-ସାହିତ୍ୟର ଅନ୍ୟାନ୍ୟ ଦିଗ

ନିବନ୍ଧ ସାହିତ୍ୟର ଅନ୍ୟ ଏକ ଦିଗ । ଭାରତୀୟ ସମାଜରେ ଆଧୁନିକ କାଳର ପ୍ରାରମ୍ଭରେ ନବୀନ ସାଂସ୍କୃତିକ ଓ ରାଜନୈତିକ ଜାଗରଣ ପ୍ରବର୍ତ୍ତିତ ହୋଇଥିଲା । ପତ୍ର-ପତ୍ରିକାରେ ସେ କାଳର ସମାଚାର, ଆନ୍ଦୋଳନର ଖବର ପ୍ରକାଶ ପାଉଥିଲା । ଏହାର ଫଳରେ ନିବନ୍ଧ-ସାହିତ୍ୟର ସୃଷ୍ଟି ସମ୍ଭବ ହୋଇଥିଲା । ଏବେ ଏହା ସାହିତ୍ୟର ଏକ ଦିଗ । ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର ପୂର୍ବରୁ ପତ୍ର-ପତ୍ରିକାରେ ଯେଉଁ ସବୁ ପ୍ରବନ୍ଧ ପ୍ରକାଶ ପାଉଥିଲା, ସେଥିରେ ସାହିତ୍ୟର ବିଭିନ୍ନ ଅଙ୍ଗର ଉନ୍ନତି, ସଂସ୍କାର ପ୍ରୟାସ, ନାଟ୍ୟ-କଳାର ଅଭିବୃଦ୍ଧି ଓ ଶିକ୍ଷାପ୍ରସାର ଆଦି ବିଷୟ ସ୍ଥାନ ପାଉଥିଲା । ଏପରି ନିବନ୍ଧର ଲେଖକମାନେ ଏକାଧାରରେ ସୃଷ୍ଟିମୂଳକ-ସାହିତ୍ୟ (Creative literature) ର ରଚକ ଓ ପ୍ରବନ୍ଧ-ଲେଖକ ଥିଲେ । ନିବନ୍ଧ ମାଧ୍ୟମରେ ସେମାନେ ନିଜ ନିଜର ମତ ବ୍ୟକ୍ତ କରୁଥିଲେ । ଭାରତେନ୍ଦୁଙ୍କ ପୂର୍ବରୁ ଯେତେ ନିବନ୍ଧ ଲେଖାଯାଇଅଛି, ତନ୍ମଧ୍ୟରେ 'ରାଜା ଭୋଜ କା ସପନା' ପ୍ରଧାନ । ଏଥିରେ ମନୁଷ୍ୟର ମିଥ୍ୟା ଅହଙ୍କାର, କୀର୍ତ୍ତି-ଲିପ୍ସାକୁ ଏକ ମନୋରଂଜକ ଶୈଳୀରେ ବର୍ଣ୍ଣନା କରାଯାଇଛି ।

ତେବେ, ଏହା ସତ୍ୟ ଯେ ଭାରତେନ୍ଦୁ ହରିଶ୍ଚନ୍ଦ୍ର ପ୍ରାଥମିକ ଭାବରେ ହିନ୍ଦୀ-ନିବନ୍ଧର ପ୍ରତିଷ୍ଠା କରିଥିଲେ । ସେ ରାଜନୈତିକ, ସାମାଜିକ ଓ ଅନ୍ୟ ସାଂସ୍କୃତିକ ବିଷୟକୁ ନେଇ ନାନା ପ୍ରବନ୍ଧ

ଲେଖି ଯାଇଛନ୍ତି । ପ୍ରବନ୍ଧର ଆବଶ୍ୟକୀୟ ଗୁଣ ସେଗୁଡ଼ିକରେ ରହି ପାରିଛି । ଭାରତେନ୍ଦୁ ଯୁଗରେ ପ୍ରବନ୍ଧରେ ବୁଦ୍ଧି-ବୈଭବ, ପାଣ୍ଡିତ୍ୟ-ପ୍ରଦର୍ଶନ ଓ ଜ୍ଞାନର ପ୍ରଚାର ହୋଇ ନାହିଁ । ଲେଖକ ଗଣ କୌଣସି ବିଷୟରେ ଅନ୍ତିମ ସିଦ୍ଧାନ୍ତ ପ୍ରଦାନ ନ କରି, କେବଳ ବିଦ୍ୟମାନ ଥିବା ବିଭିନ୍ନ ସ୍ଥିତିର ଆଲୋଚନା କରି ଯାଇଛନ୍ତି ।

ଭାରତେନ୍ଦୁଙ୍କ ପରେ ଶ୍ରୀ ବାଳକୃଷ୍ଣ ଭଟ୍ଟ ଓ ପ୍ରତାପନାରାୟଣ ମିଶ୍ର ପ୍ରମୁଖ ନିବନ୍ଧଲେଖକ । ପ୍ରତାପନାରାୟଣଙ୍କର ଲେଖାରେ ଭାଷାର ଅକୃତ୍ରିମ ପ୍ରବାହ, ସଜୀବତା ଓ ସ୍ଥାନେ ସ୍ଥାନେ ଗ୍ରାମୀଣ ବ୍ୟବହାର ଦେଖିବାକୁ ମିଳେ । ତାଙ୍କର ଶୈଳୀ ବ୍ୟଙ୍ଗାତ୍ମକ ଓ ସ୍ୱଚ୍ଛନ୍ଦ । ବାଳକୃଷ୍ଣ ଭଟ୍ଟ ଭାରତେନ୍ଦୁଙ୍କର ପ୍ରବର୍ତ୍ତିତ ବ୍ୟାଖ୍ୟାପୂର୍ଣ୍ଣ ଓ ବିଚାରାତ୍ମକ ଶୈଳୀର ଅନୁଧାବନ କରିଥିଲେ । ହାସ୍ୟରସାତ୍ମକତା ତାଙ୍କର ଲେଖାର ବିଶେଷ ଗୁଣ । ସ୍ତ୍ରୀ ଜାତି ପ୍ରତି ସହାନୁଭୂତି ପ୍ରଦର୍ଶନ କରି ଭେଦବୁଦ୍ଧି, ସ୍ୱାର୍ଥପରତା ଆଦିର ବିରୋଧରେ ସେ ଅନେକ ପ୍ରବନ୍ଧ ଲେଖିଥିଲେ । ବାଳମୁକୁନ୍ଦ ଗୁପ୍ତ ନାମକ ଅନ୍ୟତମ ଲେଖକ ଉର୍ଦ୍ଦୁ ଭାଷା ପ୍ରଭାବରେ ନିବନ୍ଧ ଲେଖି ଏ କାଳରେ ଯଶସ୍ୱୀ ହୋଇଥିଲେ । ସେ ବର୍ଣ୍ଣନାତ୍ମକ ନିବନ୍ଧକାର ଥିଲେ । ଭାରତେନ୍ଦୁ ଯୁଗର ନିବନ୍ଧ-କାରଙ୍କ ମଧ୍ୟରେ ଏମାନଙ୍କ ବ୍ୟତୀତ ଶ୍ରୀ ଜ୍ୱାଳାପ୍ରସାଦ, ଶ୍ରୀ ତୋତାରାମ, ଶ୍ରୀ ରାଧାଚରଣ ଗୋସ୍ୱାମୀ, ପଣ୍ଡିତ ଅମ୍ବିକା ବ୍ୟାସ, ପଣ୍ଡିତ ବଦ୍ରୀନାରାୟଣ ଚୌଧୁରୀ ଆଦି ପ୍ରଧାନ ଅଟନ୍ତି ।

ବିଂଶ ଶତାବ୍ଦୀରେ ପତ୍ର-ପତ୍ରିକାର ସଂଖ୍ୟା ଆହୁରି ବଢ଼ିଗଲା । ଏଣେ ରାଜନୈତିକ ଆନ୍ଦୋଳନ ବୃଦ୍ଧିଲାଭ କଲା । ଏହି ଯୁଗରେ ମହାବୀର ପ୍ରସାଦ ଦ୍ୱିବେଦୀ ପ୍ରତିନିଧି ସ୍ଥାନୀୟ ଲେଖକ । ସେ ସଂସ୍କୃତ ଢଙ୍ଗରେ, ଶିଷ୍ଟତାପୂର୍ଣ୍ଣ ଭାବ-ଭାବନା ନିବନ୍ଧରେ ସ୍ଥାନ ଦେଇଥିଲେ । ଏ କାଳରେ ଗମ୍ଭୀର ବିଷୟ ଉପରେ ପ୍ରବନ୍ଧ ଲେଖା ଯାଉଥିଲା ।

ପ୍ରବନ୍ଧ ଶିକ୍ଷିତ-ସମାଜ ମଧ୍ୟରେ ଆବଦ୍ଧ ଥିଲା । ଅଧିକ ନୈତିକ ଆଦର୍ଶର ପ୍ରତିଷ୍ଠା ଓ ଜ୍ଞାନ-ଦାନ ଏ କାଳର ପ୍ରବନ୍ଧର ଲକ୍ଷ୍ୟ ଥିଲା । ବାବୁ ଶ୍ୟାମସୁନ୍ଦର, ଶ୍ରୀ ଗୋଲାବ ରାୟ ଓ ମିଶ୍ର ବନ୍ଧୁ ଆଦି ଲେଖକମାନେ ଜ୍ଞାନ-ଗମ୍ଭୀର ନିବନ୍ଧ ଲେଖିଥିଲେ । ଦ୍ୱିବେଦୀ ଯୁଗର ପ୍ରଧାନ ନିବନ୍ଧକାରମାନଙ୍କ ମଧ୍ୟରେ ଶ୍ରୀ ମାଧବ ପ୍ରସାଦ ମିଶ୍ର, ଶ୍ରୀ ଚନ୍ଦ୍ରଧର ଶର୍ମା ଗୁଲେରୀ, ସର୍ଦ୍ଦାର ପୂର୍ଣ୍ଣସିଂହଙ୍କର ନାମ ଉଲ୍ଲେଖଯୋଗ୍ୟ । ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ଶାସ୍ତ୍ରୀୟ ଗଦ୍ୟ-ଶୈଳୀର ନୂତନ ରୂପ ଦେଇ ପ୍ରତିଷ୍ଠା ଅର୍ଜ୍ଜନ କରିଥିଲେ । ଏହାଙ୍କର 'ଚିନ୍ତାମଣି' ନାମକ ନିବନ୍ଧଗ୍ରନ୍ଥ ଯେ କୌଣସି ଭାଷାର ଅନୁବାଦଯୋଗ୍ୟ ।

୧୯୩୦ ମସିହା ପରେ ବାବୁ ଜୟଶଙ୍କର ପ୍ରସାଦ, ସୂର୍ଯ୍ୟକାନ୍ତ ତ୍ରିପାଠୀ ନିରାଳା, ଧୀରେନ୍ଦ୍ର ବର୍ମା, ନଗେନ୍ଦ୍ର, ହଜାରୀପ୍ରସାଦ ଦ୍ୱିବେଦୀ ଆଦି ଗମ୍ଭୀର-ରଚନା ଲେଖିଥିଲେ । ରାୟକୃଷ୍ଣ ଦାସ, ମାଖନଲାଲ ଚତୁର୍ବେଦୀ, ଡା. ରଘୁବୀର ସିଂହ, ଜୈନେନ୍ଦ୍ର, ସିୟାରାମଶରଣ ଆଦି ଲଳିତ-ନିବନ୍ଧ ଲେଖି ଯଶସ୍ୱୀ ହୋଇଥିଲେ । ପ୍ରବନ୍ଧର ବିବିଧ ରୂପ କ୍ରମଶଃ ପରିଲକ୍ଷିତ ହେଲା । ରାଷ୍ଟ୍ରବାଦୀ ଧାରାର ନାନା ଭାବନା ନିବନ୍ଧରେ ସ୍ଥାନ ପାଇଲା । ନିବନ୍ଧଗୁଡ଼ିକରେ ଭାବୁକତା ପ୍ରଧାନ ସ୍ଥାନ ଲାଭ କଲା ।

ବର୍ତ୍ତମାନ କାଳରେ ବିବେଚନାତ୍ମକ ନିବନ୍ଧ ବିଶେଷ ଭାବରେ ଦେଖାଯାଏ । ଆଜି ନିବନ୍ଧ ଶିକ୍ଷା-ପକ୍ଷର ଅଭାବ ପୂର୍ଣ୍ଣ କରୁଛି । ଗଳ୍ପ, ଉପନ୍ୟାସ ଓ ନାଟକ ଆନନ୍ଦ-ପକ୍ଷର ଅଭାବ ଦୂର କରୁଅଛି । ବିଭିନ୍ନ ଶୈଳୀର ଲେଖା ବର୍ତ୍ତମାନ ଯୁଗରେ ଦେଖାଦେଇଛି । କବିତ୍ୱପୂର୍ଣ୍ଣ, ନାଟକୀୟ, ସଂଭାଷଣ-ପ୍ରଧାନ, ଉପଦେଶାତ୍ମକ, ଆତ୍ମଚିନ୍ତନ, ରହସ୍ୟାତ୍ମକ, କଳାତ୍ମକ, ଭାବାତ୍ମକ, ଗମ୍ଭୀର ପାଣ୍ଡିତ୍ୟପୂର୍ଣ୍ଣ ଶୈଳୀର ବିକାଶ ହୋଇଅଛି । ପଣ୍ଡିତ ବନାରସୀ ଦାସ ଚତୁର୍ବେଦୀ,

ଶିବପୂଜନ ସହାପ୍ନ, ଶ୍ରୀ କୃଷ୍ଣଦେବ ପ୍ରସାଦ ଗୌଡ଼, ରାମକୃଷ୍ଣ ଦାସ, ଉଗ୍ର, ରାମବିଳାସ ଶର୍ମା, ଶିବଦାନ ସିଂହ ଆଦି ଲେଖକଗଣ ହିନ୍ଦୀ ନିବନ୍ଧର ବିକାଶ କରାଇଅଛନ୍ତି ।

ନିବନ୍ଧ ପରି କାବ୍ୟାଲୋଚନା ସାହିତ୍ୟର ଅନ୍ୟ ଦିଗ ଅଟେ । କାବ୍ୟାଲୋଚନା ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କଠାରୁ ମଧ୍ୟ ଆରମ୍ଭ ହୋଇଅଛି । ପୂର୍ବ ଯୁଗରେ ରସ ଓ ଅଳଙ୍କାର-ପଦ୍ଧତି ପ୍ରଚଳିତ ଥିଲା । ଏ ଯୁଗରେ ଭାଷା-ସମ୍ବନ୍ଧୀ ନବୀନତା ଆସିବା ଫଳରେ ଆଲୋଚନା-ପଦ୍ଧତି ପରିବର୍ତ୍ତିତ ହେଲା । ଏ କାଳର ସମୀକ୍ଷକ ଗଣ ଶାସ୍ତ୍ରୀୟ ନିୟମକୁ ପରିତ୍ୟାଗ କରି ନିଜ ନିଜ ରୁଚି ଓ ଦୃଷ୍ଟିକୋଣରୁ କାବ୍ୟ, ଉପନ୍ୟାସ ଓ ନାଟକର ବିଚାର କରୁଥିଲେ । ଏହି ଯୁଗ ଆଲୋଚନା କ୍ଷେତ୍ରରେ ପ୍ରୟୋଗର ଯୁଗ କହିଲେ ଚଳେ । ବଦରୀନାରାୟଣ ଚୌଧୁରୀ, ଶ୍ରୀନିବାସ ଦାସ, ଗଙ୍ଗାପ୍ରସାଦ ଅଗ୍ନିହୋତ୍ରୀ ଏ କାଳର ପ୍ରଧାନ ସମୀକ୍ଷକ ଅଟନ୍ତି ।

ପଣ୍ଡିତ ମହାବୀର ପ୍ରସାଦ ଦ୍ୱିବେଦୀଙ୍କର ଆବିର୍ଭାବ ପରେ ସମୀକ୍ଷାର ସ୍ୱରୂପରେ ପରିବର୍ତ୍ତନ ଆସିଲା । ସାମାଜିକ ସମସ୍ୟାର ଅନୁରୂପ ସାହିତ୍ୟ ସୃଷ୍ଟି ଏ ଯୁଗର ଲକ୍ଷ୍ୟ ଥିଲା । ପ୍ରାଚୀନ କବିମାନଙ୍କ ପ୍ରତି ପ୍ରଶଂସା-ଦୃଷ୍ଟି ରହିଥିଲା । ନବୀନ-କବିମାନଙ୍କ ପ୍ରତି ଆଦର ମଧ୍ୟ ଥିଲା । ନୂତନ କାବ୍ୟ-ଦୃଷ୍ଟି ଏ କାଳରେ ମଧ୍ୟ ଶାସ୍ତ୍ରୀୟ-ଆଧାରକୁ ପରିପୁଷ୍ଟ କରୁ ନ ଥିଲା । ଆଲୋଚନାର ମୂଳରେ ବିଶିଷ୍ଟ ତଥା ବ୍ୟବସ୍ଥିତ ସାହିତ୍ୟିକ-ଚେତନା ନ ଥିଲା । ମିଶ୍ର ବନ୍ଧୁ, ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ଏ ଯୁଗରେ ପ୍ରଧାନ ଆଲୋଚକ । ମିଶ୍ର ବନ୍ଧୁ ପରମ୍ପରାବାଦୀ, ରାମଚନ୍ଦ୍ର ଶୁକ୍ଳ ପ୍ରାଚୀନ ଓ ନବୀନ ପରମ୍ପରାର ସମ୍ମିଶ୍ରଣବାଦୀ ଥିଲେ । ଶୁକ୍ଳଙ୍କ ଆଲୋଚନାର ସାହିତ୍ୟାଦର୍ଶକୁ ସ୍ଥିର ଭିତ୍ତିରେ ସ୍ଥାପନ କରି ଯାଇଛନ୍ତି । ଦ୍ୱିବେଦୀ ଯୁଗର ଅନ୍ୟ ସମୀକ୍ଷକମାନଙ୍କ ମଧ୍ୟରେ

ଆଚାର୍ଯ୍ୟ ଶ୍ୟାମସୁନ୍ଦର ଦାସ, ପଣ୍ଡିତ କୃଷ୍ଣବିହାରୀ ମିଶ୍ର, ଲାଲା ଭଗବାନ ଦୀନ ପ୍ରଧାନ । ଯେଉଁମାନେ ରାମଚନ୍ଦ୍ର ଶୁକ୍ଳଙ୍କର ପ୍ରଦର୍ଶିତ ଧାରାରେ ଆଲୋଚନା କରୁଥିଲେ, ତନ୍ମଧ୍ୟରେ ପଣ୍ଡିତ ବିଶ୍ୱନାଥ-ପ୍ରସାଦ ମିଶ୍ର, ଚନ୍ଦ୍ରାବଳୀ ପାଣ୍ଡେ, ଶିଳୀମୁଖ, କୃଷ୍ଣଶଙ୍କର ଶୁକ୍ଳ, ଡକ୍ଟର ଜଗନ୍ନାଥ ପ୍ରସାଦ ଶର୍ମା ଓ ଗୁଲାବରାୟ ପ୍ରଧାନ ।

ଏହା ପରେ ଆଲୋଚନା କ୍ଷେତ୍ରରେ ଏକ ନବୀନ-ଦଳ ଦେଖାଦେଲେ । ଏମାନଙ୍କର ଧାରାକୁ ତଟସ୍ଥ ଓ ଐତିହାସିକ ଭୂମିକା-ମୂଳ ସାହିତ୍ୟିକ-ସମୀକ୍ଷା ବୋଲି କୁହାଯାଇ ପାରେ । ତତ୍କାଳୀନ ଯୁଗର ସାଂସ୍କୃତିକ ଓ ଦାର୍ଶନିକ ଆଦର୍ଶ ଉପରେ ଦୃଷ୍ଟି ରଖିବା ସଙ୍ଗେ ସଙ୍ଗେ ରଚନାର ମନୋବୈଜ୍ଞାନିକ ଓ ସାହିତ୍ୟିକ ବିଶେଷତ୍ୱ ଅଧ୍ୟୟନ ଏମାନଙ୍କର ନୀତି ଥିଲା । ଏହି ସମୀକ୍ଷା-ଧାରାରେ ଜାନକୀବଲ୍ଲଭ ଶାସ୍ତ୍ରୀ, ହଜାରୀପ୍ରସାଦ ଦ୍ୱିବେଦୀ, ରାମକୁମାର ବର୍ମା, ଲକ୍ଷ୍ମୀନାରାୟଣ ସୁଧାଂଶୁଙ୍କର ଲେଖନୀ ପ୍ରଶଂସ୍ୟ । ନଗେନ୍ଦ୍ର, ଦିନକର, ଶାନ୍ତିପ୍ରିୟ ଦ୍ୱିବେଦୀ ଆଦିଙ୍କର କେତେକ ପ୍ରବନ୍ଧ ଏହି ଧାରାରେ ଲିଖିତ । ପ୍ରାୟ ୧୯୩୫ ମସୀହାରେ ପ୍ରଶ୍ନ ଉଠିଲା—ସାହିତ୍ୟର ଉଦ୍ଦେଶ୍ୟ କଣ ? ନବୀନ ସମୀକ୍ଷକମାନେ ମତ ଦେଲେ—ସାହିତ୍ୟ ଜନତା, ସମାଜବାଦର ପ୍ରତିଷ୍ଠା ପାଇଁ ଉଦ୍ଦିଷ୍ଟ ହେବା ଉଚିତ । ସାହିତ୍ୟର ପୁଞ୍ଜିବାଦୀ-ସଭ୍ୟତାର ବିଲୋପ ପାଇଁ କାର୍ଯ୍ୟ କରିବା ଆବଶ୍ୟକ । ଏ କାଳ ପ୍ରସାଦ, ନରାଲା, ମହାଦେବୀ ବର୍ମା ଆଦିଙ୍କର ସାହିତ୍ୟ-ସୃଷ୍ଟିର କାଳ । 'ଜନତା ପାଇଁ ସାହିତ୍ୟ'—ଏହି ନୀତିରେ ଆଲୋଚନା ଚାଲିଲା । ଫଳରେ ପ୍ରସାଦ, ନରାଲା, ପ୍ରେମଚନ୍ଦ୍ର ଆଦି ଲେଖକଙ୍କର ସ୍ତୁତିଗାନ କରାହେଲା । ଡାକ୍ତର ରାମବିଳାସ ଶର୍ମା, ଅମୃତରାୟ, ପ୍ରକାଶଚନ୍ଦ୍ର ଗୁପ୍ତ ଏହି ଧାରାର ସମୀକ୍ଷକ । ◦

ଏହି ଧାରାର ପରେ ଯଥାର୍ଥବାଦୀ ମାର୍କ୍‌ସବାଦ ପ୍ରଭାବିତ ସମୀକ୍ଷା-ଶୈଳୀ ଜନ୍ମଲାଭ କଲା । ଏହି ଶୈଳୀର ପ୍ରବର୍ତ୍ତକମାନଙ୍କୁ ପ୍ରଗତି-ବାଦୀ ସମୀକ୍ଷକ କୁହାଯାଏ । ଏମାନେ ସାମାଜିକ ପ୍ରଗତି-ଶୀଳତାର ପୂଜକ, 'ମନୋବିଜ୍ଞାନ ପାଇଁ ମନୋବିଜ୍ଞାନ' ଓ 'କଳା ପାଇଁ କଳା' ମତର ବିରୁଦ୍ଧ-ବାଦୀ ।

ବର୍ତ୍ତମାନ ହିନ୍ଦୀ-ଆଲୋଚନା କ୍ଷେତ୍ରରେ ବ୍ୟକ୍ତିକୁ ପ୍ରାଧାନ୍ୟ ଦିଆଯାଉଅଛି, ତାହାର କୃତି ଓ ସାହିତ୍ୟିକ ସୌଷ୍ଠବକୁ ଆଦର କରାଯାଉନାହିଁ । ପାଶ୍ଚାତ୍ୟାଗତ ବିଭିନ୍ନ ମତବାଦର ଅନ୍ଧାନୁସରଣ ହେଉଅଛି । ସମାଜବାଦୀ ସମୀକ୍ଷା-ପଦ୍ଧତିରେ ଯେଉଁମାନେ ଆଲୋଚନା କରୁଛନ୍ତି, ସେମାନଙ୍କଠାରେ ବୈକ୍ତିକତା (Personal attitude) ଅଧିକ । ସମାଜବାଦୀ ପଦ୍ଧତିର ସମୀକ୍ଷକମାନଙ୍କ ମଧ୍ୟରେ ଶ୍ରୀ ଅଜ୍ଞେୟ, ଡାକ୍ତର ନଗେନ୍ଦ୍ର, ଶ୍ରୀ ଇଲାଚନ୍ଦ୍ର ଯୋଶୀ, ଶ୍ରୀ ନଳିନବିଲୋଚନ ଶର୍ମା ପ୍ରଧାନ । ମନୋବିଶ୍ଳେଷାତ୍ମକ-ଶୈଳୀରେ କେତେକ ସମୀକ୍ଷକ ଲେଖନୀ ଚାଳନା କରୁଥିବାର ଜଣାଯାଏ । ମନୋବୈଜ୍ଞାନିକ ଦୃଷ୍ଟି ପ୍ରଦର୍ଶନ କରିବା ଏଭଳି ଆଲୋଚକଙ୍କର କର୍ତ୍ତବ୍ୟ । କିନ୍ତୁ ରୁଗ୍‌ଣ ଓ ଅସୁସ୍ଥ ସାହିତ୍ୟର ବ୍ୟାଖ୍ୟା ମନୋ-ବୈଜ୍ଞାନିକ ଭିତ୍ତିରେ କରିଗଲେ ଏ ଧାରାର ସମୀକ୍ଷା ଲାଭଜନକ ହେବନାହିଁ । ଶ୍ରୀ ନରୋତ୍ତମପ୍ରସାଦ ନାଗର ମନୋବିଜ୍ଞାନଗତ ଶୈଳୀକୁ କପରି ସମୀକ୍ଷା କ୍ଷେତ୍ରରେ ପ୍ରୟୋଗ କରାଯାଇପାରେ, ତାହାର ଦୃଷ୍ଟାନ୍ତ ପ୍ରଦର୍ଶନ କରୁଅଛନ୍ତି ।

କାବ୍ୟାଲୋଚନା ହିନ୍ଦୀ-ସାହିତ୍ୟରେ ବର୍ତ୍ତମାନ ଯୁଗରେ ପ୍ରଗତି ପଥରେ ଅଗ୍ରସର ହେଉଅଛି । କିନ୍ତୁ ନିରପେକ୍ଷ, ସାତ୍ତ୍ୱିକ ସମାଲୋଚନାର ଅଭାବ ରହିଅଛି । ସାହିତ୍ୟ-ସମୀକ୍ଷା ରଚନାତ୍ମକ ଦୃଷ୍ଟିକୋଣରୁ ସଫଳ ହେଉନାହିଁ । ସାହିତ୍ୟକୁ ବିଶ୍ଳେଷଣ ଓ

ବ୍ୟାଖ୍ୟାକର ମାନବଜୀବନ ସହିତ ତାହାର ନୈକଟ୍ୟ ପ୍ରଦର୍ଶନ କଲେ—ଲେଖକର କୃତିତ୍ୱ ପ୍ରକାଶ ପାଇବ । ସମାଜବିରୋଧୀ ଚିନ୍ତାକୁ ସାହିତ୍ୟରୁ ଦୂରୀଭୂତ କରାଇବାରେ ସମୀକ୍ଷକଙ୍କର ଲେଖନୀ ହିଁ ସାହାଯ୍ୟ କରିଥାଏ । ସମୀକ୍ଷକ ସମାଜର, ଜାତିର ସଂଗଠକ ଏବଂ କବି ତଥା ଲେଖକଙ୍କର ପଥପ୍ରଦର୍ଶକ । ତେଣୁ ନିରପେକ୍ଷତା, ନିର୍ଲିପ୍ତତା, ଜ୍ଞାନ-ଗାମ୍ଭୀର୍ଯ୍ୟ, ବ୍ୟାପକ ଅଧ୍ୟୟନ ନ ଥିଲେ ଉଚ୍ଚକୋଟୀର ଆଲୋଚନା ସମ୍ଭବ ନୁହେଁ । ଏ ପ୍ରସଙ୍ଗରେ ଶ୍ରୀ ନନ୍ଦ ଦୁଲାଲ ବାଜପେୟୀଙ୍କ ଲେଖା ଆଲୋଚ୍ୟ ।

ପାଶ୍ଚାତ୍ୟ ସାହିତ୍ୟ ପରି ହିନ୍ଦୀରେ ମଧ୍ୟ ନିବନ୍ଧ ଓ ଆଲୋଚନା ଉଚ୍ଚସ୍ତରରେ ଏଯାଏଁ ଉପନୀତ ହୋଇ ପାରି ନାହିଁ । ପାଶ୍ଚାତ୍ୟ ସମୀକ୍ଷାର ସ୍ତରରେ ଆଧୁନିକ-ଭାରତୀୟ-ସାହିତ୍ୟ ଉପନୀତ ହେବାକୁ ପ୍ରୟାସ କରୁଅଛି । ହିନ୍ଦୀ କ୍ଷେତ୍ରରେ ଲକ୍ଷ୍ୟସାଧନ ନିମିତ୍ତ ଘୋର ପ୍ରଚେଷ୍ଟା ଚାଲିଥିବା ପ୍ରଶଂସାର କଥା ।

---

ମୁଦ୍ରାକର—ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର,
ପ୍ରଭାତୀ ପ୍ରେସ, କଟକ-୨